ନନ୍ଦିକେଶ୍ୱର ବିରଚିତମ୍

# ଅଭିନୟ ଦର୍ପଣମ୍

ଅନୁବାଦ : ଶ୍ରୀ ଧୀରେନ୍ଦ୍ରନାଥ ପଟ୍ଟନାୟକ, ଏମ୍.ଏ.

ପ୍ରକାଶକ :

ପଦ୍ମଜା ପ୍ରକାଶନୀ
ଫ୍ରେଣ୍ଡ୍ସ କଲୋନୀ, କଟକ-୧

ଦ୍ୱିତୀୟ ସଂସ୍କରଣ—ଏକ ହଜାର
୧୯୭୬

# ABHINAYA DARPANAM

By

NANDIKESWAR

*Oriya Translation*—
**Dhirendranath Pattnaik**

2nd impression—1000

*Price*—**Rs. 6.00**

ମୂଲ୍ୟ— ଛଅ ଟଙ୍କା

# ଅଗ୍ରଲେଖ

ନନ୍ଦିକେଶ୍ୱର ବିରଚିତ **'ଅଭିନୟ ଦର୍ପଣ'** ଶାସ୍ତ୍ରୀୟ ନୃତ୍ୟ ଶିକ୍ଷାର୍ଥୀଙ୍କ ପାଇଁ ଏକ ପ୍ରାଥମିକ ପୁସ୍ତକ ରୂପେ ବିବେଚିତ । ତେଣୁ ଭାରତର ସମସ୍ତ ଶାସ୍ତ୍ରୀୟ ନୃତ୍ୟର ଗୁରୁ ଓ ଶିକ୍ଷାର୍ଥୀଙ୍କ ପକ୍ଷେ ଏହା ଅପରିହାର୍ଯ୍ୟ । ମୂଳ ଲେଖା ସଂସ୍କୃତ ହୋଇଥିବାରୁ ଏହାକୁ ସହଜବୋଧ କରିବା ପାଇଁ ବିଭିନ୍ନ ଭାଷାରେ ଏହା ଅନୁଦିତ ହୋଇଛି । ପ୍ରଥମେ ଏହି ଗ୍ରନ୍ଥଟିର ଓଡ଼ିଆ ଅନୁବାଦ ୧୯୭୦ ମସିହାରେ ଉତ୍କଳ ସଙ୍ଗୀତ କଳାମଣ୍ଡପ, କଟକଙ୍କ ଆନୁକୂଲ୍ୟରେ ପ୍ରକାଶିତ ହୋଇଥିଲା । ଇତି ମଧ୍ୟରେ ପ୍ରକାଶିତ ପୁସ୍ତକର ସମସ୍ତ ସଂଖ୍ୟା ଶେଷ ହୋଇ ଯାଇଥିବାରୁ ଏହାର ପୁନର୍ମୁଦ୍ରଣ ଆବଶ୍ୟକ ପଡ଼ିଲା । କଳାବିକାଶ କେନ୍ଦ୍ର, କଟକ; କଳିଙ୍ଗ କଲେଜ ଅଫ୍ ମ୍ୟୁଜିକ୍ ଏଣ୍ଡ ଡ୍ୟାନ୍ସ୍, ଚଉଦ୍ୱାର; ଭଞ୍ଜ କଳାକେନ୍ଦ୍ର, ରାଉରକେଲା; ନୃତ୍ୟ ସଙ୍ଗୀତ କଳାମନ୍ଦିର, ବାଲେଶ୍ୱର ପ୍ରମୁଖ ଅନୁଷ୍ଠାନର ସାହାଯ୍ୟ ଓ ସହାନୁଭୂତି ବ୍ୟତିରେକେ ଏ ଗ୍ରନ୍ଥର ପୁନର୍ମୁଦ୍ରଣ ହୋଇ ପାରିନଥାନ୍ତା । ଏଥିପାଇଁ ଏହି ଅନୁଷ୍ଠାନର କର୍ମକର୍ତ୍ତାଙ୍କ ନିକଟରେ ମୁଁ କୃତଜ୍ଞ ।

— **ଲେଖକ**

# ସୂଚୀ


| | | |
|---|---|---|
| ୧ । | ନାଟ୍ୟୋତ୍ପତ୍ତି | ୧ |
| ୨ । | ନାଟ୍ୟ ପ୍ରଶଂସା | ୨ |
| ୩ । | ନାଟ୍ୟ, ନୃତ୍ତ ଓ ନୃତ୍ୟ | ୩–୪ |
| ୪ । | ସଭା ଲକ୍ଷଣ | ୫ |
| ୫ । | ପାତ୍ର ଲକ୍ଷଣ | ୬ |
| ୬ । | କିଙ୍କିଣୀ ଲକ୍ଷଣ | ୭ |
| ୭ । | ପ୍ରାର୍ଥନା | ୭ |
| ୮ । | ପୁଷ୍ପାଞ୍ଜଳି | ୮ |
| ୯ । | ଅଭିନୟ | ୯ |
| ୧୦ । | ଶିରୋଭେଦ | ୧୧ |
| ୧୧ । | ଦୃଷ୍ଟିଭେଦ | ୧୫ |
| ୧୨ । | ଗ୍ରୀବା ଭେଦ | ୧୮ |
| ୧୩ । | ହସ୍ତଭେଦ—ଅସଂଯୁତହସ୍ତ | ୨୦–୨୧ |
| ୧୪ । | ସଂଯୁତ ହସ୍ତ | ୩୯ |
| ୧୫ । | ଦେବହସ୍ତ | ୪୮ |
| ୧୬ । | ଦଶାବତାର ହସ୍ତ | ୫୨ |
| ୧୭ । | ଜାତିହସ୍ତ | ୫୪ |
| ୧୮ । | ବାନ୍ଧବ ହସ୍ତ | ୫୬ |
| ୧୯ । | ନୃତ୍ତହସ୍ତ | ୫୯ |
| ୨୦ । | ନବଗ୍ରହ ହସ୍ତ | ୬୦ |
| ୨୧ । | ପାଦଭେଦ-ମଣ୍ଡଳଭେଦ | ୬୨–୬୩ |
| ୨୨ । | ସ୍ଥାନକଭେଦ | ୬୬ |
| ୨୩ । | ଉତ୍ପ୍ଲବନ ଭେଦ | ୬୮ |
| ୨୪ । | ଭ୍ରମରୀ ଲକ୍ଷଣ | ୭୦ |
| ୨୫ । | ଚାରୀଭେଦ | ୭୨ |
| ୨୬ । | ଗତିଭେଦ | ୭୪ |
| ୨୭ । | ପରିଶିଷ୍ଟ—ଅଷ୍ଟରସ | ୭୭ |

# ସୂଚନା

## (୧)

ବିଶ୍ୱ ସଂସ୍କୃତି ଓ ସଭ୍ୟତାରେ ନୃତ୍ୟ, ନାଟ୍ୟ ଓ ଅଭିନୟର ସ୍ଥାନ ଅତି ଉଚ୍ଚରେ । ଭାରତୀୟ ସଂସ୍କୃତି ତାର ନୃତ୍ୟ ନାଟ୍ୟ ଓ ଅଭିନୟ ଦ୍ୱାରା କେଉଁଭଳି ପ୍ରେରିତ, ପ୍ରଭାବିତ ଓ ସମୁନ୍ନତ ତାର ବର୍ଣ୍ଣନା ଏଠାରେ ଅନାବଶ୍ୟକ । କିନ୍ତୁ ଏହା ସ୍ପଷ୍ଟ ଭାବରେ କୁହାଯାଇପାରେ ଯେ ଭାରତୀୟ ସଂସ୍କୃତିରେ ଏଗୁଡ଼ିକର ସ୍ଥାନ ଅତି ଗୁରୁତ୍ୱପୂର୍ଣ୍ଣ । ଭାରତୀୟ ସଂସ୍କୃତିକୁ ସମୁନ୍ନତ କରିବା ଦିଗରେ ଏଗୁଡ଼ିକର ଦାନ ଅତୁଳନୀୟ । ପ୍ରାଚୀନ ଶାସ୍ତ୍ର, ପୁରାଣ ଇତ୍ୟାଦି ପର୍ଯ୍ୟାଲୋଚନା କଲେ ଦେଖାଯାଏ ଯେ ବୈଦିକ ଯୁଗରୁ ଏଗୁଡ଼ିକର ମହତ୍ତ୍ୱ ପ୍ରତିପାଦିତ ହୋଇଅଛି । ସଂସ୍କୃତିର ବିକାଶ ଦିଗରେ ଏହି ଉପାଦାନଗୁଡ଼ିକ ଭାରତର ଐତିହ୍ୟବାହୀ ପରମ୍ପରା କ୍ରମେ ଚାଲି ଆସିଅଛି ।

ଆଧ୍ୟାତ୍ମିକ ଚେତନା (*Spiritual Conciousness*)ରୁ ଉଦ୍ଭୂତ ଭାରତୀୟ ସଂସ୍କୃତିର ଏହି ବିଭାଗଗୁଡ଼ିକୁ ଉପଯୁକ୍ତ ମାର୍ଗରେ ପରିଚାଳିତ କରିବା ନିମିତ୍ତ ବିଦ୍ୟାନୁରାଗୀ ଓ କଳା ଜ୍ଞାନ ବିଭୂଷିତ ଆର୍ଯ୍ୟ ଋଷିଗଣ ବହୁ ଶାସ୍ତ୍ର ରଚନା କରି ଯାଇଅଛନ୍ତି । ଏଗୁଡ଼ିକରେ ସେଗୁଡ଼ିକର ରୂପରେଖ, ଶୈଳୀ, ପ୍ରଣାଳୀ ଇତ୍ୟାଦି ସମ୍ବନ୍ଧରେ ବିସ୍ତୃତ ଆଲୋଚନା କରାଯାଇଅଛି । ଭାରତୀୟ ନୃତ୍ୟ ଓ ନାଟ୍ୟର ବିଜ୍ଞାନ ସମ୍ବଳିତ ବହୁ ସାହିତ୍ୟ ସୃଷ୍ଟି ହୋଇଥିବାର ପ୍ରମାଣ ମିଳେ । ତନ୍ମଧ୍ୟରୁ ଭରତଙ୍କ ରଚିତ 'ନାଟ୍ୟଶାସ୍ତ୍ର', ଶାର୍ଙ୍ଗଦେବ କୃତ 'ସଙ୍ଗୀତରତ୍ନାକର', ଧନଞ୍ଜୟ କୃତ 'ଦଶରୂପକ' ଏବଂ ନନ୍ଦିକେଶ୍ୱରଙ୍କ 'ଅଭିନୟ ଦର୍ପଣ' ପ୍ରଧାନ । ଏତଦ୍‌ବ୍ୟତୀତ ସଙ୍ଗୀତ କଳ୍ପଦ୍ରୁମ, ସଙ୍ଗୀତ ଦାମୋଦର, ନୃତ୍ୟ ସର୍ବସ୍ୱ, ନର୍ତ୍ତନ ନିର୍ଣ୍ଣୟ, ନୃତ୍ୟବିଳାସ, ସଙ୍ଗୀତ ନାରାୟଣ, ନୃତ୍ୟସାଗର, ନାଟ୍ୟ-ମନୋରମା, ଅଭିନୟ ଚନ୍ଦ୍ରିକା ଇତ୍ୟାଦି ବହୁ ଶାସ୍ତ୍ରର ପରିଚୟ ମିଳେ ।

ଭରତଙ୍କ ନୃତ୍ୟକଳାରେ ଅଭିନୟ ଏକ ବଶିଷ୍ଟ ସ୍ଥାନ ଅଧିକାର କରେ । ଅଭିନୟ ସହିତ ଯେଉଁ ନୃତ୍ୟ କରାଯାଏ ତାର ନାମହିଁ କେବଳ ନୃତ୍ୟ । ଅଭିନୟ ଶୂନ୍ୟ ନୃତ୍ୟର ନାମ ନୃତ୍ତ । ଆଚାର୍ଯ୍ୟ ନନ୍ଦିକେଶ୍ୱରଙ୍କ 'ଅଭିନୟ ଦର୍ପଣ' ଭାରତୀୟ ଅଭିନୟ କଳା ସମ୍ବନ୍ଧରେ ଏକ ବଶିଷ୍ଟ ଗ୍ରନ୍ଥ । ଯଦ୍ୟପି ଏହି ଗ୍ରନ୍ଥ ଭରତଙ୍କ 'ନାଟ୍ୟଶାସ୍ତ୍ର' ଲିଖିତ ହେବାର ବହୁବର୍ଷ ପରେ ରଚିତ ହୋଇଥିଲା, ଅଭିନୟ ସଙ୍କେତ ଓ ସେଗୁଡ଼ିକର ବିନିଯୋଗ ତଥା ଅଭିନୟ ସିଦ୍ଧାନ୍ତ ଗୁଡ଼ିକର ମୌଳିକ ବ୍ୟାଖ୍ୟା ଏଥିରେ ହୋଇଥିବାରୁ ଏହା ନୃତ୍ୟ ଓ ନାଟ୍ୟ ଜଗତରେ ଏକ ସ୍ୱତନ୍ତ୍ର ଅସ୍ତିତ୍ୱ ଓ ମହତ୍ତ୍ୱ ପ୍ରତିପାଦନ କରେ ।

ଏପର୍ଯ୍ୟନ୍ତ 'ଅଭିନୟ ଦର୍ପଣ'ର ଲେଖକ ଆଚାର୍ଯ୍ୟ ନନ୍ଦିକେଶ୍ୱରଙ୍କ ଜୀବନ ବା ଜୀବନକାଳ ସମ୍ବନ୍ଧରେ କୌଣସି ଗବେଷକ ଏକ ଉପଯୁକ୍ତ ସିଦ୍ଧାନ୍ତରେ ଉପନୀତ ହୋଇ ପାରି ନାହାନ୍ତି । କାରଣ ନନ୍ଦିକେଶ୍ୱରଙ୍କ ନାମ ବହୁ ତାଳ, ରସ, ଯୋଗ, ତନ୍ତ୍ର, କାମଶାସ୍ତ୍ର, ପୂର୍ବମୀମାଂସା ଏବଂ ଲିଙ୍ଗାୟତ ଶୈବଧର୍ମ ସମ୍ବନ୍ଧୀୟ ଗ୍ରନ୍ଥ ସହିତ ସଂପୃକ୍ତ ଥିବାର ଦେଖାଯାଏ । ତାଳ ଲକ୍ଷଣ, ତାଳାଦିଲକ୍ଷଣ ଏବଂ ତାଳାଭିନୟଲକ୍ଷଣ ନାମକ ତିନୋଟି ଗ୍ରନ୍ଥ ନନ୍ଦିକେଶ୍ୱରଙ୍କ ଦ୍ୱାରା ରଚିତ ହୋଇଥିବାର ପ୍ରମାଣ ମିଳେ । ରାଜଶେଖର ତାଙ୍କର 'କାବ୍ୟ ମୀମାଂସା'ରେ ଲେଖିଛନ୍ତି ଯେ ନନ୍ଦିକେଶ୍ୱର ରସ ସମ୍ବନ୍ଧରେ ମଧ୍ୟ ଗ୍ରନ୍ଥ ପ୍ରଣୟନ କରିଛନ୍ତି । 'ଯୋଗତାରାବଳୀ' ଶୀର୍ଷକ ଏକ ଗ୍ରନ୍ଥ ନନ୍ଦିକେଶ୍ୱରଙ୍କ-ଦ୍ୱାରା ରଚିତ ହୋଇଅଛି । 'ନନ୍ଦିକେଶ୍ୱର ତିଳକ' ନାମରୁ ମଧ୍ୟ ପ୍ରମାଣ ମିଳେ ଯେ ଏହାର ରଚୟିତା ନନ୍ଦିକେଶ୍ୱର । "ପଞ୍ଚଶାୟକ" ଗ୍ରନ୍ଥରେ କାମଶାସ୍ତ୍ର ସମ୍ବନ୍ଧରେ ନନ୍ଦିକେଶ୍ୱରଙ୍କୁ ଏକ ଲେଖକ ହିସାବରେ ଉଲ୍ଲେଖ କରାଯାଇଅଛି । 'ପ୍ରଭାକର ବିଜୟ' (ପୂର୍ବମୀମାଂସା) ଗ୍ରନ୍ଥର ରଚୟିତା ମଧ୍ୟ ନନ୍ଦିକେଶ୍ୱର ବୋଲି ଉଲ୍ଲେଖ ଅଛି । ଜଣେକ ନନ୍ଦିକେଶ୍ୱର ଯେ ଏ ସମସ୍ତର ରଚୟିତା ଏହା ନିଃସନ୍ଦେହରେ କୁହାଯାଇ ନ ପାରେ । ତାଳ

ଓ ଅଭିନୟ ସମ୍ବନ୍ଧରେ ଲେଖିଥିବା ନନ୍ଦିକେଶ୍ୱର ଏକ ଏବଂ ଯୋଗ ତନ୍ତ୍ର, ପୂର୍ବମୀମାଂସା ଇତ୍ୟାଦିର ଲେଖକ ଅନ୍ୟ କେହି ହୋଇଥିବା ସମ୍ଭବ । କାରଣ 'ସଙ୍ଗୀତ ରତ୍ନାକର'ର ରଚୟିତା ଶାର୍ଙ୍ଗଦେବ 'ଅଭିନୟ ଦର୍ପଣ' ଗ୍ରନ୍ଥର ବହୁଳାଂଶ ଉଦ୍ଧାର କରିଅଛନ୍ତି । ସେ ଲେଖିଛନ୍ତି ଯେ ନନ୍ଦିକେଶ୍ୱର ଜଣେ ସଙ୍ଗୀତ ବିଶେଷଜ୍ଞ ଥିଲେ ଏବଂ ତାଳ ଓ ଅଭିନୟର ଯଥେଷ୍ଟ ଉନ୍ନତି ସାଧନ କରିଥିଲେ ।

ନନ୍ଦିକେଶ୍ୱରଙ୍କ ଅଭ୍ୟୁଦୟ ଓ ରଚନାକାଳ ସମ୍ବନ୍ଧରେ ବିଭିନ୍ନ ମତବାଦ ପରିଲକ୍ଷିତ ହୁଏ । ଅନେକେ ତାଙ୍କୁ ନାଟ୍ୟ-ଶାସ୍ତ୍ରକାର ଭରତଙ୍କର ପୂର୍ବବର୍ତ୍ତୀ ଓ ଅନେକେ ଭରତଙ୍କର ସମସାମୟିକ ବୋଲି ଯୁକ୍ତି କରନ୍ତି । ତାଙ୍କ ଯୁକ୍ତିରେ ସେମାନେ ଦର୍ଶାନ୍ତି ଯେ ପ୍ରଥମେ ଶିବଙ୍କ ନିକଟରୁ ନନ୍ଦିକେଶ୍ୱର ନାଟ୍ୟ ଓ ସଙ୍ଗୀତ ବିଜ୍ଞାନ ଶିକ୍ଷା କରିଥିଲେ ଏବଂ ପରବର୍ତ୍ତୀ ଗ୍ରନ୍ଥକାରଗଣ ମଧ୍ୟ ଭରତ ଓ ନନ୍ଦିକେଶ୍ୱରଙ୍କ ନାମୋଲ୍ଲେଖ ଏକସଙ୍ଗେ କରିଅଛନ୍ତି । ସାରଦାତନୟ ତାଙ୍କର 'ଭାବପ୍ରକାଶନ' ଗ୍ରନ୍ଥ (ତୃତୀୟ ଅଧ୍ୟାୟ)ରେ ଉଲ୍ଲେଖ କରିଅଛନ୍ତି ଯେ ନନ୍ଦିକେଶ୍ୱର ମୁନି ଭରତଙ୍କୁ ନାଟ୍ୟକଳା ଶିକ୍ଷା ଦେଇଥିଲେ । କିନ୍ତୁ ସମସ୍ତ ଯୁକ୍ତିରେ କୌଣସି ସାରବତ୍ତା ନ ଥିଲା ପରି ମନେ ହୁଏ । କାରଣ ସ୍ୱୟଂ ନନ୍ଦିକେଶ୍ୱର 'ଅଭିନୟ ଦର୍ପଣ' ଗ୍ରନ୍ଥରେ ନାଟ୍ୟୋତ୍ପତ୍ତି ପ୍ରସଙ୍ଗରେ ଲେଖିଛନ୍ତି—

"ନାଟ୍ୟବେଦଂ ଦଦୌପୂର୍ବଂ ଭରତାୟ ଚତୁର୍ମୁଖଃ ।
ତତଶ୍ଚଭରତଃ ସାର୍ଦ୍ଧଂ ଗନ୍ଧର୍ବାପ୍ସରସାଂ ଗଣୈଃ ॥
ନାଟ୍ୟଂ ନୃତ୍ତଂ ତଥା ନୃତ୍ୟମଗ୍ରେ ଶମ୍ଭୋଃ ପ୍ରଯୁକ୍ତବାନ୍ ।"

ପୂର୍ବକାଳରେ ବ୍ରହ୍ମା ଭରତଙ୍କୁ ନାଟ୍ୟବେଦ ପ୍ରଦାନ କରିଥିଲେ । ଭରତ ଗନ୍ଧର୍ବ ଓ ଅପ୍ସରାଙ୍କ ସହିତ ଶମ୍ଭୁଙ୍କର ସମ୍ମୁଖରେ ନାଟ୍ୟ, ନୃତ୍ୟ ଓ ନୃତ୍ତର ପ୍ରଯୋଜନା କରିଥିଲେ । ଏଥିରୁ ସ୍ପଷ୍ଟ ପ୍ରମାଣିତ ହେଉଅଛି ଯେ ଭରତ ନନ୍ଦିକେଶ୍ୱରଙ୍କ ପୂର୍ବବର୍ତ୍ତୀ ଥିଲେ ।

ଅନେକେ ମତପୋଷଣ କରନ୍ତି ଯେ ନନ୍ଦିକେଶ୍ୱର ସ୍ୱର୍ଗବାସୀ ଥିଲେ । ଶିବଙ୍କର ଗଣ ନନ୍ଦୀ ଏବଂ ନନ୍ଦିକେଶ୍ୱରଙ୍କୁ ଏକ ଭାବରେ ସେମାନେ ଗ୍ରହଣ କରନ୍ତି । କିନ୍ତୁ 'ଲିଙ୍ଗ ପୁରାଣ' ନାମକ ଗ୍ରନ୍ଥରେ ନନ୍ଦି ମର୍ତ୍ତ୍ୟବାସୀ ବୋଲି ବର୍ଣ୍ଣନା ଅଛି । ସେ ଶିଳାଦ ନାମ୍ନୀ ଏକ ଅନ୍ଧ ନାରୀଙ୍କ ପୁତ୍ର । ଶିଳାଦ ଦେବତାମାନଙ୍କୁ ଏକ ଅମର ପୁତ୍ର ନିମନ୍ତେ ପ୍ରାର୍ଥନା କରିଥିଲେ । ଶିବ ଏହି ପ୍ରାର୍ଥନା ଶୁଣି ତାଙ୍କୁ ଏକ ପୁତ୍ର ପ୍ରଦାନ କରିଥିଲେ ଓ ତାହାର ନାମ ନନ୍ଦୀ ରଖିଥିଲେ । ଏହି ନନ୍ଦି କ୍ରମେ ନନ୍ଦିକେଶ୍ୱର ନାମରେ ପରିଚିତ ହୋଇ ଶିବଙ୍କର ଗଣମାନଙ୍କ ମଧ୍ୟରେ ପ୍ରଧାନ ଆସନ ଲାଭକଲେ ଏବଂ ଶିବଙ୍କ ଦ୍ୱାରା ଅମରତ୍ୱ ପ୍ରାପ୍ତହେଲେ ।

ଶ୍ରୀ ରାମକୃଷ୍ଣ କବି ନନ୍ଦୀ ବା ନନ୍ଦୀକେଶ୍ୱର ଏବଂ ତଣ୍ଡୁ ଏକ ବୋଲି ଯୁକ୍ତି କରିଅଛନ୍ତି । ତାଙ୍କ ମତରେ ନନ୍ଦୀକେଶ୍ୱର 'ନନ୍ଦୀସ୍ୱର ସଂହିତା' ନାମକ ଗ୍ରନ୍ଥର ରଚୟିତା । କିନ୍ତୁ ଏହି ଗ୍ରନ୍ଥଟିର ଏକ ଅଧ୍ୟାୟ ବ୍ୟତୀତ ଅନ୍ୟ ସମସ୍ତ ଲୁପ୍ତ ହୋଇ ଯାଇଅଛି ଏବଂ ଏହି ଅଧ୍ୟାୟଟି 'ଅଭିନୟ ଦର୍ପଣ ଗ୍ରନ୍ଥ' । କିନ୍ତୁ ଏଭଳି ଯୁକ୍ତିରେ ଯଥାର୍ଥତା ଥିଲା ପରି ମନେ ହୁଏ ନାହିଁ ।

ଭରତଙ୍କ ନାଟ୍ୟଶାସ୍ତ୍ରରେ ନନ୍ଦିକେଶ୍ୱରଙ୍କ ନାମୋଲ୍ଲେଖ ଦେଖାଯାଏ ନାହିଁ । କିନ୍ତୁ ନାଟ୍ୟଶାସ୍ତ୍ରର କାବ୍ୟମାଳା ସଂସ୍କରଣର ପରିଶେଷରେ "ସମାପ୍ତଶ୍ଚାୟଂ (ଗ୍ରନ୍ଥଃ) ନନ୍ଦି ଭରତ ସଂଗୀତ-ପୁସ୍ତକମ୍" ଉଲ୍ଲେଖ ଅଛି । ଏଥିରୁ ଅନୁମିତ ହୁଏ ଯେ, ନନ୍ଦୀ ବା ଭରତ ଉପାଧିଧାରୀ ନନ୍ଦିକେଶ୍ୱର ନାଟ୍ୟଶାସ୍ତ୍ର-ରଚନାରେ ସମ୍ପୃକ୍ତ ଥିଲେ । କିନ୍ତୁ ଏହା ସପକ୍ଷରେ କୌଣସି ପ୍ରମାଣ ମିଳେନାହିଁ ।

ସଙ୍ଗୀତ ଶାସ୍ତ୍ରକାର ମତଙ୍ଗ ତାଙ୍କର ବୃହଦ୍ଦେଶୀରେ ନନ୍ଦିକେଶ୍ୱର ନାମୋଲ୍ଲେଖ କରି ଅଛନ୍ତି । ମତଙ୍ଗ ଦ୍ୱାଦଶ ସ୍ୱର ମୂର୍ଚ୍ଛନାର ଆଲୋଚନାରେ ନନ୍ଦୀକେଶ୍ୱରଙ୍କୁ କୋହଳ ପ୍ରଭୃତିଙ୍କ ଭଳି ପ୍ରାମାଣିକ ଶାସ୍ତ୍ରୀ ହିସାବରେ ଗ୍ରହଣ କରିଛନ୍ତି । ମୂର୍ଚ୍ଛନାର

ପ୍ରସଙ୍ଗରେ ସେ ଲେଖିଛନ୍ତି "ନନ୍ଦିକେଶ୍ୱରେଣାପ୍ୟୁକ୍ତଂ - "। ତାମିଳଗ୍ରନ୍ଥ "ଶିଲପ୍‌ପଦ୍ଦିକରମ୍" ରେ ମତଙ୍ଗଙ୍କର ନାମୋଲ୍ଲେଖ ଅଛି। 'ଶିଲପ୍‌ପଦ୍ଦିକରମ୍' ଗ୍ରନ୍ଥର ସମୟ କାଳ ୫ମ ଶତାବ୍ଦୀ ବୋଲି ସିଦ୍ଧାନ୍ତ କରାଯାଇଅଛି। ତେଣୁ ମତଙ୍ଗଙ୍କର ସମୟକାଳ ଏହି ଗ୍ରନ୍ଥ ରଚନାର ପୂର୍ବବର୍ତ୍ତୀ। ଏତଦ୍ ବ୍ୟତୀତ ଦାମୋଦର ମିଶ୍ର ବିରଚିତ "କୁଟ୍ଟିନୀ ମତ" ଗ୍ରନ୍ଥରେ ପ୍ରାଚୀନ ଶାସ୍ତ୍ରୀ ହିସାବରେ ନନ୍ଦିକେଶ୍ୱରଙ୍କ ନାମୋଲ୍ଲେଖ କରାଯାଇଅଛି। ଏହି ଗ୍ରନ୍ଥ ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀରେ ରଚିତ ହୋଇଥିବାର ପ୍ରମାଣ ମିଳେ। ତେଣୁ ନନ୍ଦିକେଶ୍ୱର ଯେ ପଞ୍ଚମ ଶତାବ୍ଦୀର ପୂର୍ବବର୍ତ୍ତୀ ଏଥିରେ ସନ୍ଦେହ ନାହିଁ।

'ଅଭିନୟ ଦର୍ପଣ' ଗ୍ରନ୍ଥରେ ନନ୍ଦିକେଶ୍ୱର ଭଗବାନ ବିଷ୍ଣୁଙ୍କର ଦଶାବତାରର ଅଭିନୟ ନିର୍ଣ୍ଣୟ କରିଅଛନ୍ତି। କିନ୍ତୁ ସେ ବୁଦ୍ଧଙ୍କୁ ଭଗବାନଙ୍କ ଅବତାର ଭାବରେ ଗ୍ରହଣ-ନ-କରି ଶ୍ରୀକୃଷ୍ଣଙ୍କୁ ଗ୍ରହଣ କରିଛନ୍ତି। ଯୁକ୍ତି ହୋଇପାରେ ଯେ ବୌଦ୍ଧ ଧର୍ମପ୍ରତି ବିଦ୍ୱେଷ ହେତୁ ସେ ବୁଦ୍ଧଙ୍କୁ ଅବତାର ଭାବରେ ଗ୍ରହଣ କରି ନାହାନ୍ତି। କିନ୍ତୁ ପ୍ରକୃତରେ ହିନ୍ଦୁଗଣହିଁ ତାଙ୍କୁ ଭଗବାନଙ୍କର ଅବତାର ହିସାବରେ ଗ୍ରହଣ କରିଛନ୍ତି। ତେଣୁ ଏ ଯୁକ୍ତି ଅମୂଳକ। ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ, ଯେଉଁ ପର୍ଯ୍ୟନ୍ତ ହିନ୍ଦୁଗଣ ବୁଦ୍ଧଙ୍କୁ ଅବତାର ଭାବରେ ଗ୍ରହଣ କରି ନ ଥିଲେ 'ଅଭିନୟ ଦର୍ପଣ' ଯେ ସେହି ସମୟର ଲେଖା ଏଥିରେ ସନ୍ଦେହ ନାହିଁ। ହିନ୍ଦୁ ଶାସ୍ତ୍ରର "ମତ୍ସ୍ୟପୁରାଣ" ଏବଂ ଭାଗବତ ପୁରାଣରେ ପ୍ରଥମ ଥର ପାଇଁ ବୁଦ୍ଧଙ୍କୁ ଭଗବାନଙ୍କ ଅବତାର ରୂପେ ବର୍ଣ୍ଣନା କରାଯାଇଅଛି। 'ମତ୍ସ୍ୟପୁରାଣ' ରଚିତ ହେବାର ସମୟ କାଳ ଷଷ୍ଠ ଶତାବ୍ଦୀ ବୋଲି ଐତିହାସିକଗଣ ସିଦ୍ଧାନ୍ତ କରିଛନ୍ତି। ତେଣୁ ଏହା ପୂର୍ବରୁ ଯେ 'ଅଭିନୟ ଦର୍ପଣ' ଲେଖା ହୋଇଥିଲା ଏଥିରେ ସନ୍ଦେହ ନାହିଁ।

ନନ୍ଦିକେଶ୍ୱରଙ୍କ ସମୟ କାଳ ସମ୍ବନ୍ଧରେ ଏକ ପ୍ରକାର ଧାରଣା କରାଯାଏ । କିନ୍ତୁ ସେ କେଉଁ ସ୍ଥାନର ବ୍ୟକ୍ତି ଥିଲେ ଓ ଭାରତର କେଉଁ ଅଞ୍ଚଳରେ ବାସ କରୁଥିଲେ ଏ ସମ୍ବନ୍ଧରେ କୌଣସି ସିଦ୍ଧାନ୍ତ ଏପର୍ଯ୍ୟନ୍ତ କରାଯାଇ ପାରିନାହିଁ । ଶ୍ରୀ ମନମୋହନ ଘୋଷ, ଏମ୍. ଏ., ପି. ଏଚ୍. ଡ଼ି, କାବ୍ୟତୀର୍ଥ ବହୁ ଆଲୋଚନା କରି 'ଅଭିନୟ ଦର୍ପଣ'ର ଇଂରାଜୀ ଅନୁବାଦର ମୁଖବନ୍ଧରେ ଲେଖିଅଛନ୍ତି ଯେ ନନ୍ଦିକେଶ୍ୱର ଦକ୍ଷିଣ ଭାରତର ଲୋକ ହୋଇଥିବା ଅନୁମାନ କରାଯାଏ । କାରଣ ନନ୍ଦିକେଶ୍ୱର (ଶିବ) ଦକ୍ଷିଣ ଭାରତର ଏକ ଲୋକପ୍ରିୟ ଦେବତା । ତେଣୁ ଲେଖକଙ୍କର ନାମ ତଦନୁଯାୟୀ ହୋଇଥିବା ସମ୍ଭବ । ଏତଦ୍ ବ୍ୟତୀତ ବର୍ତ୍ତମାନ ସୁଦ୍ଧା ଅଭିନୟ ଦର୍ପଣ ଗ୍ରନ୍ଥର ଯେଉଁ କେତୋଟି ପାଣ୍ଡୁଲିପି ମିଳୁଛି, ତନ୍ମଧ୍ୟରୁ ପ୍ରାୟ ସମସ୍ତ ତେଲୁଗୁ ଅକ୍ଷରରେ ଲିଖିତ ।

ଅଦ୍ୟାବଧି ଅଭିନୟ ଦର୍ପଣ ଗ୍ରନ୍ଥର ପାଞ୍ଚୋଟି ପାଣ୍ଡୁଲିପି ସଂଗୃହୀତ ହୋଇଥିବାର ସୂଚନା ମିଳେ । ଶ୍ରୀ ମନମୋହନ ଘୋଷ ଲେଖିଛନ୍ତି ଯେ, ଗୋଟିଏ ମାନ୍ଦ୍ରାଜ ସରକାରଙ୍କ ଓରିଏଣ୍ଟାଲ୍ ଏମ୍. ଏସ୍. ଏସ୍. ଲାଇବ୍ରେରୀରେ (*Madras Govt. M S. S. Library*) ଗୋଟିଏ ତାଳପତ୍ର ପାଣ୍ଡୁଲିପି ବିଶ୍ୱଭାରତୀରେ ଏବଂ ଅନ୍ୟ ତିନୋଟି ଆଡ଼ୟାର ଲାଇବ୍ରେରୀରେ ସଂଗୃହୀତ ହୋଇଅଛି । ତନ୍ମଧ୍ୟରୁ ବିଶ୍ୱଭାରତୀ ଲାଇବ୍ରେରୀରେ ଥିବା ପାଣ୍ଡୁଲିପି ବ୍ୟତୀତ ଅନ୍ୟଗୁଡ଼ିକ ଅସମ୍ପୂର୍ଣ୍ଣ । ଏହି ପାଣ୍ଡୁଲିପିଗୁଡ଼ିକର ବିଷୟ କ୍ରମ ତଥା ଲକ୍ଷଣ ଗୁଡ଼ିକରେ ମଧ୍ୟ ପ୍ରଭେଦ ଦେଖାଯାଏ । ମାନ୍ଦ୍ରାଜ ସରକାରଙ୍କ ଓରିଏଣ୍ଟାଲ୍ ଲାଇବ୍ରେରୀରେ ସଂରକ୍ଷିତ ପାଣ୍ଡୁଲିପିରେ 'ଯ' 'ଇ' ଏବଂ 'ଯା' ସ୍ଥାନରେ 'ଏ'ର ପ୍ରୟୋଗ କରାଯାଇଅଛି । 'ଇ' ସ୍ଥାନରେ "ଈ"ର ସର୍ବତ୍ର ପ୍ରୟୋଗ ହୋଇଅଛି. ମାତ୍ର ଶାନ୍ତିନିକେତନରେ ସଂରକ୍ଷିତ ପାଣ୍ଡୁଲିପିରେ 'ଖ' ଏବଂ 'ଇ' ପରିବର୍ତ୍ତନରେ ବିଶେଷ ରୂପରେ 'କ' ଏବଂ 'ଅ'ର

ବ୍ୟବହାର କରାଯାଇ ଅଛି । ବିସର୍ଗ ପ୍ରୟୋଗ ସ୍ଥଳରେ ପ୍ରାୟ 'ଃ'ର ପ୍ରୟୋଗ କରାଯାଇଅଛି । କୌଣସି ଅକ୍ଷରକୁ ଦ୍ୱିତ୍ୱ କରିବା ନିମିତ୍ତ ଅନୁସ୍ୱାରକୁ ପ୍ରଥମରେ ରଖାଯାଇଅଛି ।

(୨)

## ନାଟ୍ୟଶାସ୍ତ୍ର ଓ ଅଭିନୟ ଦର୍ପଣ

ନାଟକ, ନୃତ୍ୟ ଏବଂ ଅଭିନୟ ପରସ୍ପର ସହିତ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ ହେଲେହେଁ ପ୍ରୟୋଗ ଏବଂ ଲକ୍ଷଣ କ୍ଷେତ୍ରରେ ପ୍ରତ୍ୟେକର ନିଜସ୍ୱ ଏବଂ ସ୍ୱତନ୍ତ୍ର ସତ୍ତା ରହିଛି । ଯଦ୍ୟପି ସଂସ୍କୃତ ସାହିତ୍ୟର ନାଟ୍ୟ ସାହିତ୍ୟ ସମୃଦ୍ଧ ଅଟେ, ତଥାପି ପର୍ଯ୍ୟାପ୍ତ ଉପାଦାନର ଅଭାବରୁ ଏହାକୁ ବ୍ୟାପକ ବିକଶନଶୀଳ କୁହାଯାଇ ନ ପାରେ । ଭରତଙ୍କ 'ନାଟ୍ୟଶାସ୍ତ୍ର'ହିଁ ଏକମାତ୍ର ଗ୍ରନ୍ଥ, ଯେଉଁଥିରେ କି ନାଟ୍ୟ, ନୃତ୍ୟ ଏବଂ ଅଭିନୟର ପର୍ଯ୍ୟାପ୍ତ ଉପାଦାନ ରହିଛି । ଭାରତୀୟ ନାଟ୍ୟ ଶାସ୍ତ୍ରର ପ୍ରାଚୀନ ଇତିହାସ ଅଧ୍ୟୟନ ନିମିତ୍ତ ଏହା ଏକ ସୁଲଭ ଓ ଉପାଦେୟ ଗ୍ରନ୍ଥ ରୂପେ ଗୃହୀତ । ଏହି ଗ୍ରନ୍ଥର ଆଧାର ଉପରେ ଭାରତୀୟ ନାଟ୍ୟ ପରମ୍ପରାର ସ୍ରୋତ ପ୍ରବାହିତ ହୋଇଅଛି । କିନ୍ତୁ ବର୍ତ୍ତମାନ ସୁଦ୍ଧା ଭାରତୀୟ ନାଟ୍ୟ ପରମ୍ପରାର ଉଦ୍ଭବ, ବିକାଶ ଏବଂ ତାହାର ପ୍ରାଚୀନ ଇତିହାସର ସମୁଚିତ ଅଧ୍ୟୟନ କରାଯାଇ ପାରିନାହିଁ ।

ଅଭିନୟ ଦର୍ପଣ, ଅଭିନୟ ସମ୍ବନ୍ଧୀୟ ଏକ ବହୁମୂଲ୍ୟ ଉପାଦେୟ ଗ୍ରନ୍ଥ । ଏଥିରେ ମୁଖ୍ୟ ରୂପରେ ଅଭିନୟର ସଙ୍କେତ ବର୍ଣ୍ଣନା କରାଯାଇଅଛି । ଯଦ୍ୟପି ଭରତଙ୍କ ନାଟ୍ୟ ଶାସ୍ତ୍ରରେ ବର୍ଣ୍ଣିତ ଅଭିନୟ ସମ୍ବନ୍ଧୀୟ ସିଦ୍ଧାନ୍ତ ଓ ସୂତ୍ରଗୁଡ଼ିକର ଆଧାର ଏଥିରେ ଗ୍ରହଣ କରାଯାଇଅଛି, ଅଧ୍ୟୟନରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ ଅଭିନୟଦର୍ପଣ, ଲକ୍ଷଣ ଏବଂ ପ୍ରୟୋଗ ବ୍ୟାଖ୍ୟା କରିବାରେ ସ୍ୱାଧୀନ ଓ ଧନ୍ୟ । ନାଟ୍ୟଶାସ୍ତ୍ର ଏବଂ ଅଭିନୟ ଦର୍ପଣର ତୁଳନାତ୍ମକ ଅଧ୍ୟୟନ କଲେ ଦୁଇ ଗ୍ରନ୍ଥମଧ୍ୟରେ ପ୍ରଭେଦ ସ୍ପଷ୍ଟ ଭାବରେ ପ୍ରମାଣିତ ହୁଏ ।

ଶାସ୍ତ୍ରାନୁସାୟୀ ଅଭିନୟ ଚାରିପ୍ରକାର—ଆଙ୍ଗିକ, ବାଚିକ, ଆହାର୍ଯ୍ୟ ଓ ସାତ୍ତ୍ୱିକ । ଏହି ଚାରି ପ୍ରକାର ଅଭିନୟ ମଧ୍ୟରୁ କେବଳ ଆଙ୍ଗିକ ଅଭିନୟର ବ୍ୟାଖ୍ୟା ଅଭିନୟ ଦର୍ପଣ ଗ୍ରନ୍ଥରେ କରାଯାଇଅଛି । ଏହାର ମୁଖ୍ୟ କାରଣ ନଟ ଏବଂ ନଟୀଙ୍କୁ ଅଭିନୟର ପ୍ରଶିକ୍ଷଣ ଦେବା ନିମିତ୍ତ ଆଙ୍ଗିକ ଅଭିନୟ ପ୍ରଧାନ ଉପକରଣ । ପ୍ରାରମ୍ଭରୁ ସାମାଜିକ କ୍ରିୟା କଳାପରେ ଆଙ୍ଗିକ ଅଭିନୟର ସଙ୍କେତ ଗୁଡ଼ିକର ବିଶେଷ ମହତ୍ତ୍ୱ ରହିଛି । ଜନତାର ପ୍ରାରମ୍ଭିକ୍ ଭାଷା ମଧ୍ୟରେ ହିଁ ପ୍ରଥମେ ଆଙ୍ଗିକ ସଙ୍କେତହିଁ ଦେଖାଯାଏ ଏବଂ ଏହା ନିଶ୍ଚିତ ଯେ ମନୁଷ୍ୟର ଭାଷାର ବିକାଶରେ ଏହାର ପୂର୍ଣ୍ଣ ସହଯୋଗ ରହିଅଛି । ଭାଷାରେ ସର୍ବଦା ସଙ୍କେତ ମାଧ୍ୟମ ହୋଇ ଆସିଛି । ସଙ୍କେତ ଗୁଡ଼ିକର ଅପାର ଶକ୍ତି, ମନୁଷ୍ୟର ବୌଦ୍ଧିକ ବିକାଶ ଏବଂ ସଭ୍ୟତାର ବିକାଶରେ ଯଥେଷ୍ଟ ସାହାଯ୍ୟ କରୁଛି । ଏଥିପାଇଁ ମାନବିକତାର ସର୍ବପ୍ରଥମ କଳା ନୃତ୍ୟର ଏହା ସହିତ ଅଭେଦ ସମ୍ବନ୍ଧ ଥିବା କୌଣସି ଆଶ୍ଚର୍ଯ୍ୟ ବ୍ୟାପାର ନୁହେଁ । ସଙ୍କେତ ଓ ମୁଦ୍ରା କେବଳ ଏକ ଉଦାହରଣ । ତାନ୍ତ୍ରିକ ପ୍ରୟୋଗରେ ମୁଦ୍ରାଗୁଡ଼ିକର ଉପଯୋଗ ବହୁଦିନରୁ ଚଳି ଆସୁଅଛି । କିନ୍ତୁ ନୃତ୍ୟ ବା ଅଭିନୟର ମୁଦ୍ରାଗୁଡ଼ିକର ତାନ୍ତ୍ରିକ ମୁଦ୍ରାଗୁଡ଼ିକ ସହିତ କୌଣସି ସାମଞ୍ଜସ୍ୟ ନାହିଁ ।

ଅଭିନୟ ଦର୍ପଣରେ କେବଳ ଆଙ୍ଗିକ ଅଭିନୟର ବର୍ଣ୍ଣନା ଥିବା ସ୍ଥଳେ ନାଟ୍ୟଶାସ୍ତ୍ରରେ ସମସ୍ତ ପ୍ରକାର ଅଭିନୟର ବିଶଦ ବର୍ଣ୍ଣନା ଦିଆଯାଇଅଛି । ଉଭୟ ଗ୍ରନ୍ଥରେ ବର୍ଣ୍ଣିତ ଆଙ୍ଗିକ ଅଭିନୟର ଏକ ତୁଳନାତ୍ମକ ବ୍ୟାଖ୍ୟା ନିମ୍ନରେ ପ୍ରଦତ୍ତ ହେଲା ।

(୧) **ଶିରଭଙ୍ଗୀ**—ନାଟ୍ୟଶାସ୍ତ୍ରରେ ତେର ପ୍ରକାର ଶିର ଭଙ୍ଗୀର ବର୍ଣ୍ଣନା ଅଛି । କିନ୍ତୁ ଅଭିନୟ ଦର୍ପଣରେ ନଅ ପ୍ରକାର ଶିର ଭଙ୍ଗୀର ଉଲ୍ଲେଖ ଅଛି । ତନ୍ମଧ୍ୟରୁ ପାଞ୍ଚୋଟି ଶିର ଭଙ୍ଗୀର ନାମ ନାଟ୍ୟ ଶାସ୍ତ୍ରରେ ବର୍ଣ୍ଣିତ ଶିରଭଙ୍ଗୀ ସହିତ ସମାନ । ସେ

ଗୁଡ଼ିକ—ଧୂତ, କମ୍ପିତ, ପରାବୃତ୍ତ, ଉତ୍କ୍ଷିପ୍ତ ଓ ପରିବାହିତ । ଏଗୁଡ଼ିକର ବିନିଯୋଗରେ ଉଭୟର ମତ ଏକ । ଅଭିନୟ ଦର୍ପଣର ଉଦ୍‌ବାହିତ ଶିର ନାଟ୍ୟଶାସ୍ତ୍ରର ଉତ୍କ୍ଷିପ୍ତ ଶିର ସହିତ ସମାନ ।

(୨) **ଗ୍ରୀବାଭଙ୍ଗୀ**—ନାଟ୍ୟ ଶାସ୍ତ୍ରରେ ନଅ ପ୍ରକାର ଗ୍ରୀବାଭଙ୍ଗୀର ଉଲ୍ଲେଖ ଅଛି । କିନ୍ତୁ ଅଭିନୟ ଦର୍ପଣରେ ଚାରି ପ୍ରକାର ଗ୍ରୀବାଭଙ୍ଗୀର ଉଲ୍ଲେଖ ଅଛି । ଉଭୟ ଶାସ୍ତ୍ରରେ ବର୍ଣ୍ଣିତ ଗ୍ରୀବାଭଙ୍ଗୀର କୌଣସି ସାମଞ୍ଜସ୍ୟ ନାହିଁ ।

(୩) **ଦୃଷ୍ଟିଭଙ୍ଗୀ**—ନାଟ୍ୟଶାସ୍ତ୍ରରେ ତିନି ପ୍ରକାର ମୁଖ୍ୟ ଦୃଷ୍ଟିଭଙ୍ଗୀର ବର୍ଣ୍ଣନା ଅଛି, ଯଥା :—ରସଦୃଷ୍ଟି, ସ୍ଥାୟୀ ଭାବ ପ୍ରକାଶକ ଦୃଷ୍ଟି ଏବଂ ସଞ୍ଚାରି ଦୃଷ୍ଟି । ପୁଣି ରସଦୃଷ୍ଟି ଆଠପ୍ରକାର ସ୍ଥାୟୀ ଭାବପ୍ରକାଶକ ଦୃଷ୍ଟି ଆଠପ୍ରକାର ଏବଂ ସଞ୍ଚାରି ଦୃଷ୍ଟି କୋଡ଼ିଏ ପ୍ରକାର । ଏହିପରି ସମସ୍ତ ୩୬ ପ୍ରକାର ଦୃଷ୍ଟିର ବର୍ଣ୍ଣନା ଅଛି । କିନ୍ତୁ ଅଭିନୟ ଦର୍ପଣରେ ମାତ୍ର ଆଠପ୍ରକାର ଦୃଷ୍ଟିଭଙ୍ଗୀର ବର୍ଣ୍ଣନା ଅଛି । ଦୃଷ୍ଟିଭଙ୍ଗୀର ନାମକରଣରେ ଉଭୟ ଶାସ୍ତ୍ର ମଧ୍ୟରେ ବହୁ ପ୍ରଭେଦ ଦେଖାଯାଏ ।

(୪) **ହସ୍ତମୁଦ୍ରା**—ନାଟ୍ୟଶାସ୍ତ୍ର ଓ ଅଭିନୟ ଦର୍ପଣ, ଉଭୟ ଶାସ୍ତ୍ର ହସ୍ତମୁଦ୍ରାକୁ ତିନିଭାଗରେ ବିଭକ୍ତ କରିଛନ୍ତି, ଯଥା:— ଅସଂଯୁତହସ୍ତ, ସଂଯୁତହସ୍ତ ଏବଂ ନୃତ୍ତହସ୍ତ । ଉଭୟ ଶାସ୍ତ୍ରରେ ବର୍ଣ୍ଣିତ ମୁଦ୍ରାଗୁଡ଼ିକର ଅଧିକାଂଶ ନାମକରଣ ମଧ୍ୟ ସମାନ । କିନ୍ତୁ ଏଗୁଡ଼ିକର ସଂଖ୍ୟା, ବର୍ଣ୍ଣନା ଓ ବିନିଯୋଗ ସମ୍ବନ୍ଧରେ ଉଭୟ ଶାସ୍ତ୍ର ଭିନ୍ନ ଭିନ୍ନ ମତପୋଷଣ କରନ୍ତି ।

ନାଟ୍ୟଶାସ୍ତ୍ରରେ ୨୪ ପ୍ରକାର ଅସଂଯୁତ ହସ୍ତ ମୁଦ୍ରାର ବର୍ଣ୍ଣନା ଦିଆଯାଇଅଛି । କିନ୍ତୁ ଅଭିନୟ ଦର୍ପଣରେ ବର୍ଣ୍ଣିତ ଅସଂଯୁତ ହସ୍ତ ମୁଦ୍ରାର ସଂଖ୍ୟା ୨୮ । ଉଭୟ ଶାସ୍ତ୍ରରେ ୨୨ଟି

ମୁଦ୍ରାର ନାମକରଣ ସମାନ । କର୍ତ୍ତରୀମୁଖ, କଟକାମୁଖ, କପିତ୍ଥ, ସୂଚୀ, କାଙ୍ଗୁଳ, ଅଳପଦ୍ମ, ହଂସପକ୍ଷ, ସନ୍ଦଂଶ ଏବଂ ତାମ୍ରଚୂଡ଼ ହସ୍ତର ବର୍ଣ୍ଣନା ଉଭୟ ଶାସ୍ତ୍ରରେ ଭିନ୍ନ ଭିନ୍ନ ଭାବରେ ଦିଆଯାଇଅଛି । ପତାକା, ତ୍ରିପତାକା, ଅର୍ଦ୍ଧଚନ୍ଦ୍ର, ଅରାଳ, ଶୁକତୁଣ୍ଡ, ମୁଷ୍ଟି, ଶିଖର, ପଦ୍ମକୋଷ, ସର୍ପଶୀର୍ଷ, ମୃଗଶୀର୍ଷ, ଚତୁର ଭ୍ରମର ଏବଂ ମୁକୁଳ ହସ୍ତମୁଦ୍ରାର ବର୍ଣ୍ଣନା ଉଭୟ ଶାସ୍ତ୍ରରେ ସମାନ । ପତାକା, ତ୍ରିପତାକା, ଅର୍ଦ୍ଧଚନ୍ଦ୍ର, ମୁଷ୍ଟି କଟକାମୁଖ, ପଦ୍ମକୋଷ, ସର୍ପଶୀର୍ଷ ଓ ମୁକୁଳ ମୁଦ୍ରା ବ୍ୟତୀତ ଅନ୍ୟାନ୍ୟ ମୁଦ୍ରାର ବିନିଯୋଗ ଭିନ୍ନ ଭିନ୍ନ ରୂପରେ ଉଭୟ ଶାସ୍ତ୍ରରେ ବର୍ଣ୍ଣିତ ହୋଇଅଛି ।

ନାଟ୍ୟଶାସ୍ତ୍ରରେ ତେର ପ୍ରକାର ସଂଯୁତ ହସ୍ତମୁଦ୍ରାର ବର୍ଣ୍ଣନା ଅଛି ଏବଂ ଅଭିନୟ ଦର୍ପଣରେ ୨୩ ପ୍ରକାର ସଂଯୁତ ହସ୍ତମୁଦ୍ରାର ବର୍ଣ୍ଣନା ଅଛି । ଅଞ୍ଜଳୀ, କପୋତ, କର୍କଟ ଏବଂ ପୁଷ୍ପପୁଟ ମୁଦ୍ରାଗୁଡ଼ିକର ବର୍ଣ୍ଣନା ଓ ବିନିଯୋଗ ଉଭୟ ଶାସ୍ତ୍ରରେ ସମାନ ।

ନାଟ୍ୟଶାସ୍ତ୍ରରେ ୨୭ ପ୍ରକାର ନୃତ୍ତହସ୍ତର ବର୍ଣ୍ଣନା ଅଛି । ଏବଂ ସେଗୁଡ଼ିକ ସଂଯୁତ ଓ ଅସଂଯୁତ ହସ୍ତମୁଦ୍ରାଠାରୁ ଭିନ୍ନ । କିନ୍ତୁ ଅଭିନୟଦର୍ପଣରେ ସେଗୁଡ଼ିକର ସଂଖ୍ୟା ୧୩ ଏବଂ ସେଗୁଡ଼ିକ ସଂଯୁତ ଓ ଅସଂଯୁତ ହସ୍ତମୁଦ୍ରାଠାରୁ ଭିନ୍ନ ନୁହନ୍ତି । ସମସ୍ତ ହସ୍ତମୁଦ୍ରାଗୁଡ଼ିକୁ ସଂଶ୍ଳେଷଣ କଲେ ଦେଖାଯାଏ ଯେ ନାଟ୍ୟଶାସ୍ତ୍ରରେ ବର୍ଣ୍ଣିତ ହସ୍ତମୁଦ୍ରାର ସଂଖ୍ୟା ୬୪ ଏବଂ ଅଭିନୟ ଦର୍ପଣରେ ବର୍ଣ୍ଣିତ ହସ୍ତମୁଦ୍ରାର ସଂଖ୍ୟା ୫୧ ।

(୪) **ଭ୍ରମରୀ**—ନାଟ୍ୟଶାସ୍ତ୍ରରେ ୩୨ ପ୍ରକାର ଭୃମରର ଉଲ୍ଲେଖ ଅଛି ଏବଂ ତନ୍ମଧ୍ୟରୁ ୧୬ଟି ଭୌମୀ ଓ ଅନ୍ୟ ୧୬ଟି ଆକାଶିକା । କିନ୍ତୁ ଅଭିନୟଦର୍ପଣରେ ଆଠ ପ୍ରକାର ଭୃମରର ବର୍ଣ୍ଣନା ଅଛି । ଉଭୟ ଶାସ୍ତ୍ରରେ ଭୃମରୀ ନାମକରଣରେ କୌଣସି ସାମଞ୍ଜସ୍ୟ ନାହିଁ ।

**(୭) ମଣ୍ଡଳ**—ନାଟ୍ୟଶାସ୍ତ୍ରରେ ୨୦ ପ୍ରକାର ମଣ୍ଡଳ ପାଦର ବର୍ଣ୍ଣନା ଦିଆଯାଇଅଛି—ସେଗୁଡ଼ିକ ପୁଣି ଭୌମୀ ଓ ଆକାଶିକା ଦୁଇ ଭାଗରେ ବିଭକ୍ତ । କିନ୍ତୁ ଅଭିନୟ ଦର୍ପଣରେ ଦଶପ୍ରକାର ମଣ୍ଡଳପାଦର ବର୍ଣ୍ଣନା ଅଛି । ଉଭୟ ଶାସ୍ତ୍ରରେ ନାମକରଣର କୌଣସି ସାମଞ୍ଜସ୍ୟ ନାହିଁ ।

( ୩ )

## ଅଭିନୟ

ଦୃଶ୍ୟମାନ ସମସ୍ତ ଜଗତକୁ ବିଭିନ୍ନ ରୂପରେ ଉପଲବ୍ଧି କରିବାର ପ୍ରୟାସ ମାନବ ହୃଦୟରେ ସର୍ବଦା ସ୍ପନ୍ଦିତ । ମାନବ ଜାତିର ଏହି ପ୍ରୟାସ ଓ ସର୍ଜନକ୍ଷମ ଚିନ୍ତାଧାରାରୁହିଁ କଳାର ସୃଷ୍ଟି । ଜଗତକୁ ଉପଲବ୍ଧି କରିବାର ମାଧ୍ୟମରୂପେ ମାନବ ଜାତି ସର୍ବ ପ୍ରଥମେ ଅଭିନୟ କଳାକୁହିଁ ଆବିଷ୍କାର କରିଥିଲା । କାରଣ ଆଦିମାନବ ପ୍ରଥମେ ଯାହା ଦେଖିଲା ଭାଷା ଅଭାବରୁ ତାହା ଅନ୍ୟମାନଙ୍କ ଆଗରେ ପ୍ରକାଶ କରିପାରିଲା ନାହିଁ । ସେ ତାହା ଦେହର ଅଙ୍ଗଭଙ୍ଗୀ ଦ୍ୱାରା ପ୍ରକାଶ କରିବାକୁ ଚେଷ୍ଟା କଲା । ବର୍ତ୍ତମାନ ସୁଦ୍ଧା ପୃଥିବୀର ବିଭିନ୍ନ ଦେଶରେ ଆଦିମ ଅଧିବାସୀ-ମାନଙ୍କ ମଧ୍ୟରେ ପ୍ରଚଳିତ ନୃତ୍ୟରେ ମଧ୍ୟ ଏହାର ସନ୍ଧାନ ମିଳେ । ଆଫ୍ରିକା, ଅଷ୍ଟ୍ରେଲିଆ, ଉତ୍ତର-ଏସିଆ ଓ ଭାରତର ଆଦିମ ଅଧିବାସୀଗଣ ପଶୁପକ୍ଷୀର ଭାବ ଓ ଭଙ୍ଗୀକୁ ଅନୁକରଣ କରି ଅଦ୍ୟାବଧି ନୃତ୍ୟ କରନ୍ତି । ଏହା ଅଭିନୟର ଆଦିରୂପ । ଏହାକୁ ମୂକ-ଅଭିନୟ (Pantomime) ବୋଲିଯାଏ ।

କୌଣସି ଏକ ପଶୁ, ପକ୍ଷୀ, ବ୍ୟକ୍ତି ବା ବସ୍ତୁର ଗତି ଓ ଭାବଭଙ୍ଗୀକୁ ଅନୁକରଣ କରି ବା କୌଣସି କାଳ୍ପନିକ ଦେବ-ଦେବୀଙ୍କର ଚରିତ୍ରକୁ ନିଜର ଚିନ୍ତାଧାରା ବଳରେ ରୂପ ଦେଇ

ଅନ୍ୟମାନଙ୍କ ହୃଦୟରେ ତଦ୍ରୂପ ବିଶ୍ୱାସ ଜନ୍ମାଇବା (make believe) ଚେଷ୍ଟାରୁହିଁ ଅଭିନୟର ସୃଷ୍ଟି । ଅନେକେ ଯୁକ୍ତି କରନ୍ତି—ଖେଳ, ଥଟ୍ଟାତାମସା, ବ୍ୟଙ୍ଗ ଇତ୍ୟାଦି ମନୁଷ୍ୟର ଆଦିମ ପ୍ରକୃତି ଏବଂ ଏହିଥିରୁ ହିଁ ଅଭିନୟ କଳାର ସୃଷ୍ଟି । ସେ ଯାହାହେଉନା କାହିଁକି, ନିଜର ବ୍ୟକ୍ତିତ୍ୱକୁ ହଜାଇ ଅନ୍ୟର ଭାବଭଙ୍ଗୀର ବାସ୍ତବ ରୂପକୁ ଅନୁକରଣ କରି ବା ସେହି ଚରିତ୍ରର ଛଳନା କରି ପ୍ରଦର୍ଶନ କରିବାର ନାମ ଅଭିନୟ । ମାନବମାନେ ଅଭିନୟରେ ଆନନ୍ଦଲାଭ କରନ୍ତି । କାରଣ ଅଭିନୟ ମାନବ-ଜୀବନ ସହିତ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ । ବାସ୍ତବ ଜୀବନରେ ପ୍ରତ୍ୟେକ ମାନବକୁ ଅଭିନୟ କରିବାକୁ ପଡ଼ିଥାଏ । ଏତଦ୍ ବ୍ୟତୀତ ଅନ୍ୟର ଭାବଭଂଗୀକୁ ଅନୁକରଣ କରି, ତଦ୍ଦ୍ୱାରା ଆନନ୍ଦ ଲାଭ କରିବା ମାନବର ଏକ ସହଜାତ ପ୍ରବୃତ୍ତି । ମନୁଷ୍ୟର ବାସ୍ତବ ଜୀବନରେ ଅଭିନୟର ପ୍ରୟୋଗ ବ୍ୟାପକ । ଏହି ଦୃଷ୍ଟିକୋଣରୁ ମାନବ ଜାତିକୁ 'ନାଟ୍ୟକାମୀ ପ୍ରାଣୀ' (dramatic animal) ଭାବରେ ଅଭିହିତ କରାଯାଇପାରେ (Theatre and Stage Edited by Harold Downs Page 18 Vol. 1)

ପ୍ରତ୍ୟେକ କଳା ପ୍ରଥମେ ମନୁଷ୍ୟ ଜୀବନର ଅପରିହାର୍ଯ୍ୟ ଅଙ୍ଗରୂପେ ପରିଗଣିତ ହେଉଥିଲା । କ୍ରମେ ମନୁଷ୍ୟ ଏହାକୁ ଏକ ରୂପ ଦେଇ ଆନନ୍ଦର ସାମଗ୍ରୀରୂପେ ବ୍ୟବହାର କଲା । କିନ୍ତୁ ଅଭିନୟକୁ କଳା ରୂପରେ ଗ୍ରହଣ କରିବା ପୂର୍ବରୁ ଏହା ମାନବ ଜୀବନରେ ଆନନ୍ଦର ସଞ୍ଚାର କରୁଥିଲା । କଳାର ସୃଷ୍ଟି ମୂଳରେ ଆନନ୍ଦ ହିଁ ଚିର ବିଦ୍ୟମାନ । ମାନବ ସଭ୍ୟତା ଓ ସଂସ୍କୃତିର ବିକାଶ ସଙ୍ଗେ ସଙ୍ଗେ ଅଭିନୟ ସମାଜରେ କଳା ରୂପରେ ପରିଗଣିତ ହେଲା । କ୍ରମେ ବିକାଶ ସ୍ରୋତରେ ଏହା ବିଭିନ୍ନ ରୂପ ଧାରଣ କଲା ।

ଭାରତୀୟ ଦୃଷ୍ଟି କୋଣରୁ ବିଚାର କଲେ ଦେଖାଯାଏ ଯେ, 'ଅଭିନୟ' ଏକ ସଂସ୍କୃତ ଶବ୍ଦ । 'ଅଭି' ଉପସର୍ଗ, 'ନୀ' ଧାତୁରୁ 'ଅଚ୍' ପ୍ରତ୍ୟୟ ଦ୍ୱାରା 'ଅଭିନୟ' ଶବ୍ଦ ନିଷ୍ପନ୍ନ ହୁଏ । 'ଅଭି' ଶବ୍ଦର ଅର୍ଥ 'ସମୀପକୁ' ଏବଂ 'ନୀ' ଧାତୁର ଅର୍ଥ ବୋହିନେବା । ସମ୍ପୂର୍ଣ୍ଣ ଶବ୍ଦର ଭାବାର୍ଥ ଏହା ଯେ ଏକ ନାଟକକୁ ଦର୍ଶକ ସମୀପରେ ପହଞ୍ଚାଇ ଦେବା । ସାଧାରଣତଃ କ୍ରୋଧ, ସ୍ନେହ ଇତ୍ୟାଦି ମନର ଭାବରାଜିକୁ ପ୍ରକାଶ କରିଥିବା ଅଙ୍ଗ ପ୍ରତ୍ୟଙ୍ଗର ଚେଷ୍ଟାଗୁଡ଼ିକୁ ଅଭିନୟ ବୋଲିଯାଏ । ଶାରୀରିକ ଚେଷ୍ଟା ଏବଂ ହାବଭାବ ଦ୍ୱାରା ଅନୁକରଣ କରିବାକୁ ମଧ୍ୟ ଅଭିନୟ ବୋଲିଯାଏ । ପ୍ରାୟ ସାଧାରଣ ଜନତା ବୁଝନ୍ତି ଯେ ନାଟକରେ ସାଜସଜ୍ଜା ହୋଇ ନକଲି ହାବ-ଭାବ ଦ୍ୱାରା କୌଣସି ବିଷୟ ଯେପରି ସେପରି ଅନୁକରଣ କରି ପ୍ରଦର୍ଶନ କରିବା ଅଭିନୟ ଅଟେ । କିନ୍ତୁ କେବଳ ବାହ୍ୟିକ ଚେଷ୍ଟାଦ୍ୱାରା ଅଭିନୟ ସମ୍ପୂର୍ଣ୍ଣ ହୁଏ ନାହିଁ । ବାହ୍ୟିକ ଚେଷ୍ଟା ସହିତ ପ୍ରକୃତ ମନର ଭାବକୁ ବ୍ୟକ୍ତକରିବା ଅଭିନୟର ମୁଖ୍ୟ ଉଦ୍ଦେଶ୍ୟ ।

ଅଭିନୟ ସମ୍ବନ୍ଧରେ 'ସାହିତ୍ୟ ଦର୍ପଣ'ରେ ଲେଖା ଅଛି ଯେ "ଭବେଦଭିନୟୋଽବସ୍ଥାନୁକାରଃ" । ଏହାର ଅର୍ଥ ଅଭିନୟର ଅଭିପ୍ରାୟ ଏହି ଯେ ଅଭିନେତା ଦ୍ୱାରା ଅଭିନେୟ ଚରିତ୍ରର ଅବସ୍ଥାଗୁଡ଼ିକର (ଶରୀର, ବାଣୀ, ମନ ତଥା ସମସ୍ତ ବ୍ୟକ୍ତିତ୍ୱର ବିଶେଷତ୍ୱ) ଅନୁକାର ଅଥବା ଅନୁକରଣ । ସାହିତ୍ୟ-ଦର୍ପଣକାର 'ଅଭିନୟ'ର ବ୍ୟାବହାରିକ ଅର୍ଥ ଗ୍ରହଣ କରିଛନ୍ତି, ପରମାର୍ଥିକ ଅର୍ଥ ନୁହେଁ ।

'ନାଟ୍ୟ ଦର୍ପଣ' ନାମକ ଗ୍ରନ୍ଥରେ ଅଭିନୟ ସମ୍ବନ୍ଧରେ ଉଲ୍ଲେଖ ଅଛି । ଗ୍ରନ୍ଥକାର ଲେଖିଛନ୍ତି –

"ସାମାଜିକାନାମାଭିମୁଖ୍ୟେନ ସାକ୍ଷାତ୍କାରେଣ ନୀୟତେ
ପ୍ରାପ୍ୟତେଽର୍ଥୋଽନେନେତ୍ୟଭିନୟଃ ।"

ଏହାର ଅର୍ଥ ଏହି ଯେ ଯାହାଦ୍ୱାରା ଦର୍ଶକମାନଙ୍କ ସମ୍ମୁଖରେ ସାକ୍ଷାତ୍କାର ରୂପରେ ଯେଉଁ ବସ୍ତୁକୁ ଉପସ୍ଥାପିତ କରାଯାଏ ତାହାକୁ ଅଭିନୟ ବୋଲାଯାଏ । ଟୀକାକାର ମଲ୍ଲୀନାଥ ଅଭିନୟର ବିଶ୍ଳେଷଣ କରିବାକୁ ଯାଇ ଲେଖିଅଛନ୍ତି ଯେ ଅଭିନୟ ରସ ଓ ଭାବବ୍ୟଞ୍ଜକ କରୁଥିବା ଅଙ୍ଗଭଙ୍ଗୀ । ତେଣୁ ଅଭିନୟ କେବଳ ଅନୁକରଣ ନୁହେଁ । ଅଭିନୟକୁ ନାଟକୀୟ ଉପାୟରେ ବିଭିନ୍ନ ରସ ଓ ଭାବର ବ୍ୟଞ୍ଜନାତ୍ମକ ଅନୁକରଣ (Suggestive imitation) କୁହାଯାଇପାରେ ।

ନାଟ୍ୟଶାସ୍ତ୍ର ଅଭିନୟଦର୍ପଣ ଭରତାର୍ଣ୍ଣବ ନାଟ୍ୟଦର୍ପଣ, ସାହିତ୍ୟ ଦର୍ପଣ ଏବଂ ବହୁ ପ୍ରାଚୀନ ଭାରତୀୟ ଗ୍ରନ୍ଥରେ ଚାରିପ୍ରକାର ଅଭିନୟର ବର୍ଣ୍ଣନା ଅଛି । ସେଗୁଡ଼ିକ ଆଙ୍ଗିକ (ଅଙ୍ଗଦ୍ୱାରା ସମ୍ପାଦିତ) ବାଚିକ (ବାଣୀଦ୍ୱାରା ସମ୍ପାଦିତ) ଆହାର୍ଯ୍ୟ (ବେଶଭୂଷାଦ୍ୱାରା ସମ୍ପାଦିତ) ଏବଂ ସାତ୍ତ୍ୱିକ (ମନୋଭାବର ଆବିଷ୍କରଣ ଦ୍ୱାରା ସମ୍ପାଦିତ) । ଏହି ଚାରିପ୍ରକାର ଅଭିନୟ ମଧ୍ୟରୁ ଆଙ୍ଗିକ ଏବଂ ସାତ୍ତ୍ୱିକ ମନୋଗତ ଭାବାଭିବ୍ୟଞ୍ଜକ ଅଟନ୍ତି ।

**ଆଙ୍ଗିକ**—ଅଙ୍ଗ ସମ୍ବନ୍ଧୀୟ ଅଭିନୟକୁ ଆଙ୍ଗିକ ବୋଲାଯାଏ । ଏହା ଭ୍ରୂବିକ୍ଷେପ ଇତ୍ୟାଦି ନାନାପ୍ରକାର ଅଙ୍ଗଭଙ୍ଗୀରୁ ନିଃସୃତ ହୁଏ । ଏହି ଅଭିନୟକୁ କଳାତ୍ମକ ଅଙ୍ଗଭଙ୍ଗୀ ମଧ୍ୟ କୁହାଯାଇ ପାରେ । ଶରୀରର ସମସ୍ତ ଅଙ୍ଗ, ପ୍ରତ୍ୟଙ୍ଗ ଏବଂ ଉପାଙ୍ଗ ଦ୍ୱାରା ଏହା ସମ୍ପାଦିତ ହୁଏ । ନାଟ୍ୟଶାସ୍ତ୍ର, ଅଭିନୟଦର୍ପଣ ଇତ୍ୟାଦି ବହୁ ଗ୍ରନ୍ଥରେ ହସ୍ତ, ପଦ, ମସ୍ତକ, ଚକ୍ଷୁ, ଗ୍ରୀବା, କଟୀ, ପାର୍ଶ୍ୱ ଇତ୍ୟାଦି ଅଙ୍ଗର ବିବିଧ ଅଭିନୟ ବର୍ଣ୍ଣିତ ହୋଇଅଛି । ଏହା ସଙ୍ଗେ ସଙ୍ଗେ ଅଙ୍ଗ ଓ ଉପାଙ୍ଗର ବିଭିନ୍ନ ଅଭିନୟର କେଉଁ ବିନିଯୋଗ ଏବଂ କେଉଁ ଅବସରରେ ସେଗୁଡ଼ିକର ପ୍ରୟୋଗ କରାଯାଏ, ତାହାର ବିଶଦ ବର୍ଣ୍ଣନା ଦିଆଯାଇ ଅଛି ।

ମୁଖ୍ୟତଃ ଅଙ୍ଗ, ପ୍ରତ୍ୟଙ୍ଗ ଓ ଉପାଙ୍ଗର ସଞ୍ଚାଳନ ଦ୍ୱାରା କୌଣସି ଭାବର ସ୍ପଷ୍ଟୀକରଣକୁ ଆଙ୍ଗିକ ଅଭିନୟ ବୋଲାଯାଏ । ଅନେକ ସମୟରେ ଏହି ଅଭିନୟର ଅଙ୍ଗଭଙ୍ଗୀ ଗୁଡ଼ିକ ପ୍ରାକୃତିକ ନୁହେଁ । କୌଣସି ଏକ କାଳ୍ପନିକ ବସ୍ତୁର ଅବତାରଣାରେ ମଧ୍ୟ ଏହା କରାଯାଏ । ଉଦାହରଣ ସ୍ୱରୂପ ଏକ ଭ୍ରମର ପଦ୍ମଗନ୍ଧା ନାୟିକାକୁ ବିବ୍ରତ କରୁଛି । ଏହି ସ୍ଥଳରେ ଭ୍ରମରର ଅନୁପସ୍ଥିତିରେ ମଧ୍ୟ ଅଙ୍ଗ ଭଙ୍ଗୀର ଏପରି ଅଭିନୟ ହୁଏ ଯଦ୍ଦ୍ୱାରା ସ୍ପଷ୍ଟ ଅନୁମିତ ହୁଏ ଯେ ଏକ ଭ୍ରମର ନାୟିକାକୁ ବିବ୍ରତ କରୁଛି ।

**ବାଚିକ**—ସ୍ୱର, ବଚନ, ଧ୍ୱନି ଇତ୍ୟାଦି ଦ୍ୱାରା ହୃଦୟଗତ ଭାବକୁ ପ୍ରକଟ କରିବାର ଅଭିନୟକୁ ବାଚିକ ବୋଲାଯାଏ । ହୃଦୟଗତ ଭାବକୁ ଶବ୍ଦ ଓ ଭାଷା ସାହାଯ୍ୟରେ ପ୍ରକଟ କରିବା ଏହାର ଲକ୍ଷ୍ୟ । ନାଟକର ପାତ୍ର ପାତ୍ରୀଗଣ ଯାହା ସମ୍ଭାଷଣ ଓ ଗୀତ ଦ୍ୱାରା ପ୍ରକଟ କରନ୍ତି ତାହା ବାଚିକ ଅଭିନୟର ଅନ୍ତର୍ଗତ । ଏହି ଅଭିନୟର ସ୍ଥାନ ନାଟକରେ ଅତି ଗୁରୁତ୍ୱପୂର୍ଣ୍ଣ । କାରଣ ଏହା ନାଟ୍ୟର ଶରୀର ରୂପେ ପରିଗଣିତ । ଏହି ଅଭିନୟରେ ନାମ, ଆଖ୍ୟାତ, ନିପାତ, ଉପସର୍ଗ, ତଦ୍ଧିତ, ବିଭକ୍ତି, ସନ୍ଧି ଆଦିକୁ ଉପଯୁକ୍ତ ଭାବରେ ପ୍ରଯୁକ୍ତ ନ କଲେ ନାଟକ ରୂପାୟନରେ ବ୍ୟାଘାତ ସୃଷ୍ଟି ହୁଏ । ଛନ୍ଦର ଉତ୍ଥାନ ଓ ପତନ ଶବ୍ଦଗୁଡ଼ିକର ବିଭିନ୍ନ ସ୍ୱର ଅକ୍ଷରବ୍ୟକ୍ତି, ବ୍ୟଞ୍ଜନା ଶୈଳୀ ଇତ୍ୟାଦି ବାଚିକ ଅଭିନୟର ପ୍ରଧାନ ଅଙ୍ଗ ।

ଭରତ ମତାନୁଯାୟୀ ଏହି ଅଭିନୟ ନାଟକରେ ପ୍ରଧାନ ସ୍ଥାନ ଅଧିକାର କରେ । କାରଣ ଆଙ୍ଗିକ, ଆହାର୍ଯ୍ୟ ଓ ସାତ୍ତ୍ୱିକ ଅଭିନୟ ଏହି ଅଭିନୟ ଉପରେ ଅନେକାଂଶରେ ନିର୍ଭରଶୀଳ । କିନ୍ତୁ ବାଚିକ ଅଭିନୟ ଅନ୍ୟ କୌଣସି ଅଭିନୟ ଉପରେ ନିର୍ଭରଶୀଳ ନୁହେଁ ।

**ଆହାର୍ଯ୍ୟ**—କେବଳ ଶରୀର ଏବଂ ବଚନ ଦ୍ୱାରା ଅଭିନୟକୁ ସମ୍ପୂର୍ଣ୍ଣ ଅଭିନୟ କୁହାଯାଇ ନ ପାରେ । କାରଣ ଏ ସମସ୍ତ ଅଭିନୟ ସହିତ ବସ୍ତ୍ରାଳଙ୍କାରର ଉପଯୁକ୍ତ ସାଜସଜ୍ଜା ମଧ୍ୟ ଆବଶ୍ୟକ । ଏହାକୁ ଆହାର୍ଯ୍ୟ ଅଭିନୟ ବୋଲିଯାଏ ଏବଂ ଏହା ଅଭିନୟର ଏକ ପ୍ରଧାନ ଅଙ୍ଗ ବିଶେଷ । ଏହି ଆହାର୍ଯ୍ୟ ଅଭିନୟ ମଧ୍ୟ ନାନା ପ୍ରକାର । ପୁସ୍ତ (ମୃତ୍ତିକା କାଷ୍ଠ ବସ୍ତ୍ର ବା ଚର୍ମ ଉପରେ ଲେପନ ଆଦି କର୍ମ) ଅଳଙ୍କାର, ଅଙ୍ଗରଚନା ଏବଂ ସଜୀବ—ଏହି ଚାରି ପ୍ରକାର ଆହାର୍ଯ୍ୟ ଅଭିନୟର ମୁଖ୍ୟ ଅଙ୍ଗରୂପେ ପରିଗଣିତ । ପୂର୍ବକାଳରେ ଅଭିନୟ ପ୍ରଦର୍ଶନ ସମୟରେ ପର୍ବତ, ରଥ, ବିମାନ, ଆଦିକୁ ଯଥାର୍ଥ ରୂପ ଦେବାକୁ ପଡୁଥିଲା ଏବଂ ଏଥିପାଇଁ ତିନିପ୍ରକାର ପୁସ୍ତ (ଲେପନ) କର୍ମ କରାଯାଉ ଥିଲା । ବାଉଁଶ ବା କାଷ୍ଠ ଉପରେ ବସ୍ତ୍ର ଚଢ଼ାଇ (ଆଧୁନିକ ରଙ୍ଗମଞ୍ଚର ସେଟ୍ )ଅଥବା ଯନ୍ତ୍ରର ସହାୟତାରେ କିମ୍ବା ଅଭିନେତାର ଚେଷ୍ଟା ଦ୍ୱାରା ଉଲ୍ଲିଖିତ ବସ୍ତୁଗୁଡ଼ିକ ଏପରି ପ୍ରସ୍ତୁତ ହେଉଥିଲା ଯାହା ପ୍ରେକ୍ଷକଙ୍କୁ ବାସ୍ତବ ରୂପରେ ବୋଧ ହେଉଥିଲା । ଏହି ପ୍ରକାର ପୁସ୍ତକର୍ମ ସଂଧିମ, ବ୍ୟାଜିମ ଓ ଚେଷ୍ଟିମ ନାମରେ ପରିଚିତ । ନାନାବିଧ ପୋଷାକ ପରିଚ୍ଛଦ ଏବଂ ଅଳଙ୍କାରର ସଜ୍ଜାକୁ ଅଳଙ୍କାର, ପାତ୍ରପାତ୍ରୀ ମାନଙ୍କର ଗୁଣାନୁରୂପ ଅଙ୍ଗରେ ରଙ୍ଗ ଲେପନକୁ ଅଙ୍ଗରଚନା ଏବଂ ମଞ୍ଚରେ ପ୍ରାଣୀମାନଙ୍କର ପ୍ରବେଶ କରାଇବାକୁ ସଂଜୀବ କୁହାଯାଉ ଥିଲା ।

**ସାତ୍ତ୍ୱିକ**—ଅନୁକାର୍ଯ୍ୟ ଦ୍ୱାରା ଅନୁଭୂତିଗୁଡ଼ିକୁ ରସ ଓ ଭାବ ଦ୍ୱାରା ପ୍ରକଟିତ କରିବାର ନାମ ସାତ୍ତ୍ୱିକ ଅଭିନୟ । ଏହା ମନୋବୃତ୍ତିରୁ ନିଃସୃତ ହୁଏ । ସ୍ତମ୍ଭ, ଖେଦ, ରୋମାଞ୍ଚ, ସ୍ୱରଭଙ୍ଗ, ବେପଥୁ, ବୈବର୍ଣ୍ଣ୍ୟ, ଅଶ୍ରୁ ଓ ପ୍ରଳୟ—ଏହି ଆଠୋଟି ସାତ୍ତ୍ୱିକ ଅଭିନୟର ଗୁଣ । ଅଭିନୟରେ ସାତ୍ତ୍ୱିକ ଅଭିନୟକୁ ଅଧିକ ମହତ୍ତ୍ୱ ଦିଆଯାଏ । ଭରତମୁନି ମଧ୍ୟ ତାଙ୍କର 'ନାଟ୍ୟଶାସ୍ତ୍ର'ରେ ଲେଖିଛନ୍ତି ଯେ ସାତ୍ତ୍ୱିକ ଅଭିନୟ ଉପରେହିଁ ନାଟ୍ୟ ପ୍ରତିଷ୍ଠିତ । ଅଭିନୟରେ ବିଦ୍ୟମାନ ସତ୍ତ୍ୱର ଅଧିକତା, ସମତା ଓ ନ୍ୟୂନତା-

ରେହିଁ ନାଟକ ଉତ୍ତମ, ମଧ୍ୟମ ଏବଂ ଅଧମ ହୁଏ । ଭାବ ଓ ରସ ଆଶ୍ରିତ ଅଭିନୟରେ ଅବ୍ୟକ୍ତ ରୂପରେ ସତ୍ତ୍ୱ ନିହିତ ଥାଏ । ଏଥିପାଇଁ ସାତ୍ତ୍ୱିକ ଅଭିନୟରେ କ୍ରୋଧ, ସ୍ନେହ, ରୋମାଞ୍ଚ, ଅଶ୍ରୁ ଆଦିର ଯଥାସ୍ଥାନ ଓ ଯଥାରସ ପ୍ରୟୋଗ କରାଯିବା ଉଚିତ । ସାଧାରଣ ଭାଷାରେ ଭାବ ଓ ରସ ସାହାଯ୍ୟରେ ଯେଉଁ ଅଭିନୟ କରାଯାଏ ତାହାକୁ ସାତ୍ତ୍ୱିକ ଅଭିନୟ ବୋଲାଯାଏ । ଏହି ଅଭିନୟ ସ୍ଥାୟୀଭାବ ଓ ନବରସ ଆଶ୍ରିତ । ଅନେକ ସମୟରେ ଭବ ପ୍ରକାଶ ପାଇଁ ବିଭିନ୍ନ ଅଙ୍ଗଭଙ୍ଗୀର ପ୍ରୟୋଜନ ମଧ୍ୟ ହୋଇଥାଏ । ତେଣୁ କେତେକ ଗବେଷକ ମତ ପୋଷଣ କରନ୍ତି ଯେ ଆଙ୍ଗିକ ଅଭିନୟ ଏବଂ ସାତ୍ତ୍ୱିକ ଅଭିନୟ ମଧ୍ୟରେ କୌଣସି ପ୍ରଭେଦ ନାହିଁ । କିନ୍ତୁ ତାଙ୍କର ଏଭଳି ମତରେ କୌଣସି ସାର-ବତ୍ତା ନ ଥିଲା ପରି ମନେ ହୁଏ । କାରଣ ଆଙ୍ଗିକ ଅଭିନୟ କେବଳ ବାହ୍ୟ ଅଙ୍ଗଭଙ୍ଗୀ । କିନ୍ତୁ ସାତ୍ତ୍ୱିକ ଅଭିନୟ ମନୁଷ୍ୟର ମନସ୍ତତ୍ତ୍ୱ ଉପରେ ପ୍ରତିଷ୍ଠିତ । ଏହା ମନୁଷ୍ୟର ଭାବ ଇତ୍ୟାଦି ଅନ୍ତରର ନିଗୂଢ଼ପ୍ରଦେଶରୁ ପ୍ରକାଶ ପାଏ । ତେଣୁ ସାତ୍ତ୍ୱିକ ଅଭିନୟର ଯେ ସ୍ୱାତନ୍ତ୍ର୍ୟ ରହିଛି, ଏଥିରେ କୌଣସି ସନ୍ଦେହ ନାହିଁ । ଏହି ଅଭିନୟ ବ୍ୟତିରେକେ ଅନ୍ୟାନ୍ୟ ଅଭିନୟର ଆଶ୍ରିତ ହେଲେହେଁ ନଟ ବା ନଟୀର ଅଭିନୟ ବା ନୃତ୍ୟ ଆଦି ଉପଭୋଗ୍ୟ ହୁଏ ନାହିଁ । ଭବବିହୀନ ଓ ରସବିହୀନ ଅଭିନୟ ବା ନୃତ୍ୟ ଜନ ଚିତ୍ତାନୁରଞ୍ଜନ କରିବାରେ ଅସମର୍ଥ ।

## ଅଭିନୟର ଚତୁର୍ଗୁଣ

ଅନୁକରଣ ନୈପୁଣ୍ୟ, ଦୃଶ୍ୟସୌଷ୍ଠବ, ଶ୍ରୁତିମାଧୁର୍ଯ୍ୟ ଏବଂ ପରିହାସ ଅଭିନୟର ଚାରୋଟି ପ୍ରଧାନ ଗୁଣରୂପେ ବିବେଚିତ ।

ନିଜ ଭିତରେ ଯଥାର୍ଥ ବସ୍ତୁର ସଂସ୍କରଣ ଥିଲେହେଁ ତାହାର ଅନୁକରଣ ଦେଖିବା ନିମିତ୍ତ ଉତ୍ସୁକ ଓ କୌତୁହଳପ୍ରିୟ ହେବା ମନୁଷ୍ୟର ସ୍ୱାଭାବିକ ପ୍ରବୃତ୍ତି । ଉଦାହରଣ ସ୍ୱରୂପ ମାଙ୍କଡ଼ ନଚାଇବା ବ୍ୟକ୍ତି ମାଙ୍କଡ଼ ନଚାଇ ଦାମ୍ପତ୍ୟ କଳହ, ମଦ ପିଇ

ଗଢ଼ିବା, ଘୋଡ଼ାରେ ଚଢ଼ିବା, ଜଳ ପିଇବା ଇତ୍ୟାଦିରେ ଅଭିନୟ ଦେଖାଏ । ଏହା ଦେଖି ମନରେ ଆମେ କୌତୂହଳ ଓ ଆନନ୍ଦ ଅନୁଭବ କରୁଁ । କାରଣ ଏଗୁଡ଼ିକ ଆମ ଜୀବନର ନିତ୍ୟ ଓ ସଂକ୍ଷିପ୍ତ ରୂପ । ଏହି କୌତୂହଳ ଓ ଆନନ୍ଦ ମାଟିର ତିଆରି କଣ୍ଢେଇ, ଚିତ୍ରାଙ୍କନ ଇତ୍ୟାଦି ଦେଖିଲେ ମଧ୍ୟ ଜାତ ହୁଏ । ଏହାର କାରଣ ଏହି ଯେ ଏ ସମସ୍ତ ମଧ୍ୟରେ ବାସ୍ତବିକ ଓ ସ୍ୱାଭାବିକ ଅନୁକୃତି ନିହିତ । ଯେଉଁ ଅନୁକୃତିରେ ସାଦୃଶ୍ୟ ବା ସ୍ୱାଭାବିକତା ନ ଥାଏ ତାହା ଆନନ୍ଦ ସୃଷ୍ଟି କରିବାରେ ସମର୍ଥ ହୋଇପାରେ ନାହିଁ । କିନ୍ତୁ ଚିତ୍ର ଓ କଣ୍ଢେଇ ଇତ୍ୟାଦି ଅପେକ୍ଷା ଅଭିନୟର ଅନୁକରଣ କଠିନ ବ୍ୟାପାର । ଏଥିରେ ଶରୀର ଓ ମନ ଉଭୟଦ୍ୱାରା ଭାବାଭିବ୍ୟକ୍ତି କରିବାକୁ ପଡ଼େ । ମନରେ ବାସ୍ତବିକ ଶୋକ ନ ଥିଲେ ମଧ୍ୟ ଶୋକ ସମଗ୍ନ ହେବାକୁ ପଡ଼େ; ଶୋକାତୁର ହୃଦୟର ସମସ୍ତ ଭାବ ଏବଂ ଚେଷ୍ଟାକୁ ପ୍ରକାଶ କରିବାକୁ ହୁଏ । ଏହାକୁ ଅନୁକରଣ ନୈପୁଣ୍ୟ ବୋଲାଯାଏ ଏବଂ ଏହା ବ୍ୟତିରେକେ ଅଭିନୟ ହୋଇପାରେ ନାହିଁ ।

ରଙ୍ଗମଞ୍ଚରେ ଦର୍ଶକଙ୍କ ମନରେ ଆନନ୍ଦ ଏବଂ ଉତ୍ସାହ ସୃଷ୍ଟି କରିବା ନିମିତ୍ତ, ଦୃଶ୍ୟସୌଷ୍ଠବ ଏକ ପ୍ରଧାନ ଉପକରଣ । ଗୁଣର ଆଦର କରିବା ଆମର ସ୍ୱାଭାବିକ ପ୍ରବୃତ୍ତି । କିନ୍ତୁ କାହାର ଗୁଣର ଖ୍ୟାତି ଶୁଣିଲେ ସେହି ବ୍ୟକ୍ତି ସହିତ ମିଳିବା ପାଇଁ ଆମ ମନରେ ଉତ୍କଣ୍ଠା ପ୍ରକାଶ ପାଏ । କାରଣ, ଶୁଣିଥିବା ଗୁଣର ଆଧାର ଓ ତଦନୁଯାୟୀ କ୍ରିୟାକଳାପକୁ ଦେଖିବାର ଇଚ୍ଛା ମନୁଷ୍ୟର ସ୍ୱାଭାବିକ ପ୍ରକୃତି । ଉଦାହରଣ ସ୍ୱରୂପ ବୃନ୍ଦାବନ କୁଞ୍ଜରେ ବ୍ରଜଚନ୍ଦ୍ରମା ନଟବର ଶ୍ରୀକୃଷ୍ଣ ଯେତେବେଳେ ବଂଶୀ-ସ୍ୱନରେ ରାଧାନାମର ମାଧୁରିମା ଭରି ଦେଉଥିଲେ, ସେହି ସ୍ୱରର ଶ୍ରବଣରେ ମାନମୟୀ ରାଧାଙ୍କର ସମ୍ମୋହିତ ପ୍ରାଣ ସେହି ସ୍ୱରର ଆଧାର ସହିତ ମିଳନ ପାଇଁ ବ୍ୟାକୁଳ ହୋଇ ଉଠୁଥିଲା । ଯେତେ ରାଧା ବଂଶୀସ୍ୱନରେ ଅଧୀରା ହୋଇ ବିହ୍ୱଳ ଚିତ୍ତରେ କୁଞ୍ଜବନରେ ପ୍ରବେଶକରି ଶ୍ରୀକୃଷ୍ଣଙ୍କୁ ପଚାରିଲେ "ମୋ ରାଣ, ସତକରି କୁହ

ବଂଶୀର କେଉଁ ରନ୍ଧ୍ରରେ ଏପରି ସୁମଧୁର ସ୍ୱର ଭରି ମୋତେ ବିହ୍ୱଳ କରିଦିଅ ? ସେହିପରି ମୋ ଆଗରେ ଥରେ ବଜାଇ ଶୁଣାଅ ।" ଗୁଣର ଖ୍ୟାତି ଶୁଣି ତାହାର ଆଧାରକୁ ଦେଖିବାପାଇଁ ସ୍ୱାଭାବିକ ପ୍ରବୃତ୍ତି ସ୍ୱତଃ ଜାଗ୍ରତ ହୁଏ ସତ, କିନ୍ତୁ ଗୁଣର ସଦୃଶ ଆଧାରକୁ ଦେଖିଲେ ଅଧିକାଧିକ ଆହ୍ଲାଦ ଉତ୍ପନ୍ନ ହୁଏ । ଯଦି ଗୁଣର ଆଧାରରେ ସାମାନ୍ୟ ତ୍ରୁଟି ହୁଏ, ତାହାହେଲେ ସମସ୍ତ ରସଭଙ୍ଗ ହୋଇଯାଏ । ଏଥିପାଇଁ ଅଭିନେତାଙ୍କୁ ସୁନ୍ଦର, ଭବ୍ୟ, ସ୍ୱରୂପବାନ ଏବଂ ସୁବେଶରେ ସୁସଜ୍ଜିତ ହେବା ଏକାନ୍ତ ଆବଶ୍ୟକ । ଦୃଶ୍ୟ ଅନୁଯାୟୀ ରଙ୍ଗଶାଳା ଏବଂ ଯବନିକା ମଧ୍ୟ ଯଥାବତ୍ ଚିତ୍ରିତ କରିବା ଏହାର ଏକ ମୁଖ୍ୟ କାର୍ଯ୍ୟ । କାରଣ ଯେଉଁ ଲୋକ ଅନ୍ୟ କୌଣସି ଦେଶର ଭାଷା ସହିତ ଅନଭିଜ୍ଞ ହେଲେହେଁ ଅଭିନୟ ଦେଖି ସେ ମୁଗ୍ଧ ହୁଏ । ଦୃଶ୍ୟସୌଷ୍ଠବ ବିନା ଏହା ସମ୍ଭବପର ହୋଇପାରେ ନାହିଁ ।

ଶ୍ରୁତିମାଧୁର୍ଯ୍ୟ ମଧ୍ୟ ଅଭିନୟର ଏକ ମୁଖ୍ୟ ଅଙ୍ଗ । ଅଭିନୟର ସମସ୍ତ ଅଙ୍ଗ ଶ୍ରେଷ୍ଠ ହେଲେହେଁ ଶ୍ରୁତିମାଧୁର୍ଯ୍ୟ ଅଭାବରେ ସମସ୍ତ ଅଭିନୟ ଉପେକ୍ଷାର ପାତ୍ର ହୁଏ । ଶ୍ରୁତିମାଧୁର୍ଯ୍ୟ ନିମିତ୍ତ ଅଭିନେତା ସ୍ୱର ସଂଯମ ଏବଂ ଶବ୍ଦ ସଂଯମ ଇତ୍ୟାଦି ଶିକ୍ଷା କରିବା ଏକାନ୍ତ ଆବଶ୍ୟକ । ବାଚିକ ଅଭିନୟର ସମସ୍ତ ଗୁଣ ଏବଂ ଭାବ, ଶ୍ରୁତି-ମାଧୁର୍ଯ୍ୟ ନିମିତ୍ତ ଅପେକ୍ଷିତ ଅଟେ । କେଉଁ ସ୍ଥଳରେ, କେଉଁ ପ୍ରସଙ୍ଗରେ, କେଉଁ ପ୍ରକାର ବାର୍ତ୍ତାଳାପ କହିବାକୁ ହେବ, ଉଦାତ୍ତ ଓ ଅନୁଦାତ୍ତ ସ୍ୱରର ଆରୋହଣ ଓ ଅବରୋହଣ କିପରି କରାଯିବା ଉଚିତ, ଛନ୍ଦୋଗାନ ବା ସମ୍ବାଦ କହିବାରେ ମାଧୁର୍ଯ୍ୟ; ଅକ୍ଷରବ୍ୟକ୍ତି, ପଦଚ୍ଛେଦ, ସୁସ୍ୱର, ଧୈର୍ଯ୍ୟ ଓ ଲୟର ଅବଲମ୍ବନ କେଉଁ ଶୈଳୀରେ ହେବା ଆବଶ୍ୟକ ଇତ୍ୟାଦି ଶ୍ରୁତିମାଧୁର୍ଯ୍ୟର ଅନ୍ତର୍ଗତ । ଶ୍ଳଥଚଳନ, ଭାଷଣ, ରୋଦନ, ହାସ୍ୟ ଆଦିରେ ବିଷୟ ଓ ପ୍ରସଙ୍ଗାନୁଯାୟୀ ଅନୁକୂଳ ସ୍ୱାଭାବିକତା ଆଣିବା ଶ୍ରୁତିମାଧୁର୍ଯ୍ୟର ମୁଖ୍ୟ ସାଧନ । ଏହା ମଧ୍ୟରେ କୃତ୍ରିମତା ଏବଂ ବିକୃତି ସର୍ବଦା ବର୍ଜନୀୟ ।

ପ୍ରସଙ୍ଗକ୍ରମେ ମନୋରଞ୍ଜନଦ୍ୱାରା ଦର୍ଶକଙ୍କ ହୃଦୟ ଓ ମାନସ ରାଜ୍ୟରେ ସ୍ଫୂର୍ତ୍ତି ଆଣିବା ନିମିତ୍ତ ତଥା ହାସ୍ୟ ଓ ବ୍ୟଙ୍ଗଦ୍ୱାରା ଶିକ୍ଷାଦେବା ନିମିତ୍ତ ଅଭିନୟରେ ପରିହାସର ଆବଶ୍ୟକତା ହୋଇଥାଏ । ଏହି ଗୁଣ ହାସ୍ୟୋଦ୍ଦୀପକ ବେଶଭୂଷା, କୌତୁକକର ବ୍ୟାପାର ଇତ୍ୟାଦି ଦ୍ୱାରା ଅଧିକ ସଫଳ ଓ ପ୍ରସ୍ଫୁଟିତ ହୁଏ ।

**ଅଭିନୟ ଓ ନୃତ୍ୟ**—ନଟ୍, ନୃତ୍, ଏବଂ ଣଟ ଧାତୁରୁ କ୍ରମଶଃ ନାଟ୍ୟ, ନୃତ୍ତ ଏବଂ ନୃତ୍ୟ ଶବ୍ଦ ନିଷ୍ପନ୍ନ ହୋଇଅଛି । ଏହି ତିନି ଶବ୍ଦର ଅର୍ଥ ମଧ୍ୟ ଧାତୁର ଆଧାର ଅନୁଯାୟୀ ଭିନ୍ନ ଭିନ୍ନ ଅଟେ । ରସାଶ୍ରିତ ପୂର୍ଣ୍ଣ ବାକ୍ୟର ଅର୍ଥକୁ ଅଭିନୟଦ୍ୱାରା ପ୍ରଦର୍ଶନ କଲେ ତାହାକୁ ନାଟ୍ୟ ବୋଲଯାଏ (ବାକ୍ୟାର୍ଥାଭିନୟଂ ରସାଶ୍ରୟଂ ନାଟ୍ୟମ୍ - ଦଶରୂପକ) । କେବଳ ଏକ ଏକ ପଦର ଅର୍ଥକୁ ଅଭିନୟ କରି ଭାବ ପ୍ରଦର୍ଶନ କଲେ ତାହାକୁ ନୃତ୍ୟ କହନ୍ତି (ପଦାର୍ଥାଭିନୟଂ ଭାବାଶ୍ରୟଂ ନୃତ୍ୟ) । ତାଳ ଓ ଲୟ ସହକାରେ ହସ୍ତପାଦାଦିର ସଞ୍ଚାଳନକୁ ନୃତ୍ତ କହନ୍ତି ।

ଦଶରୂପକର ଟୀକାକାର ଧନିକ ଭାବାଶ୍ରୟ ନୃତ୍ୟର ଟୀକାରେ ଲେଖିଛନ୍ତି—

"ନୃତେର୍ଗାତ୍ରବିକ୍ଷେପାର୍ଥତ୍ୱେନାଙ୍ଗିକ ବାହୁଲ୍ୟାତ୍ତତ୍କାରିଷୁଚ
ନର୍ତ୍ତକ ବ୍ୟପଦେଶାଲ୍ଲୋକେଽପିଚୈତତ୍ ପ୍ରେକ୍ଷଣୀୟକମିତି
ବ୍ୟବହାରାନ୍ନାଟକାଦେରନ୍ୟନ୍ନୃତ୍ୟମ୍" ।

ଅର୍ଥାତ୍ ନୃତ୍ ଧାତୁର ଅର୍ଥ ଗାତ୍ରବିକ୍ଷେପ କିମ୍ବା ଶରୀର-ଚାଳନା ଅଟେ । ଏହି ନୃତ୍ୟରେ ଅଙ୍ଗ ସଞ୍ଚାଳନର ଅଧିକତାହିଁ ଅଛି । ଏଥିପାଇଁ ହସ୍ତପାଦାଦି ବିବିଧ ଅଙ୍ଗ ସଞ୍ଚାଳନ କରି ଯେ ନୃତ୍ୟ କରେ ତାକୁ ନର୍ତ୍ତକ ବୋଲଯାଏ ଏବଂ ତାହାର ପ୍ରଦର୍ଶନକୁ ପ୍ରେକ୍ଷଣୀୟକ ବୋଲଯାଏ । ତେଣୁ ନୃତ୍ତ ସହିତ ଅଭିନୟର ସମ୍ପର୍କ ନାହିଁ କହିଲେ ଚଳେ । କିନ୍ତୁ ଅଭିନୟ, ନାଟ୍ୟ ଏବଂ ନୃତ୍ୟର ପ୍ରଧାନ ଅଙ୍ଗ । ନାଟ୍ୟ ସହିତ ଅଭିନୟର ସମ୍ପର୍କ

ନୃତ୍ୟ ମାଧ୍ୟମରେ ଘନିଷ୍ଠ ହୋଇଥିବା ସମ୍ଭବପର । କାରଣ ନୃତ୍ୟରୁହିଁ ନାଟକର ସୃଷ୍ଟି । ବିଭିନ୍ନ ଦେଶର ନାଟ୍ୟ ସମ୍ବନ୍ଧରେ ପର୍ଯ୍ୟାଲୋଚନା କଲେ ଏହା ସ୍ପଷ୍ଟ ପ୍ରମାଣିତ ହୁଏ । ଜାପାନ, ବର୍ମା, ବାଲି ଦେଶର ନାଟ୍ୟରେ ନୃତ୍ୟହିଁ ଅଧିକ ପ୍ରାଧାନ୍ୟ ଲାଭ କରିଥାଏ । ଏତଦ୍‌ବ୍ୟତୀତ ଭାରତୀୟ ନାଟ୍ୟ ସମ୍ପର୍କରେ ଭରତମୁନି ତାଙ୍କର 'ନାଟ୍ୟଶାସ୍ତ୍ର'ରେ ଉଲ୍ଲେଖ କରିଛନ୍ତି ଯେ ନାଟକ ଏପରି ଲେଖା ହେବା ଉଚିତ ଯେଉଁଥିରେ କି ନୃତ୍ୟ ପ୍ରୟୋଗ କରାଯାଇପାରିବ । ହିନ୍ଦୁ ନାଟକ ସହିତ ନୃତ୍ୟର ଘନିଷ୍ଠ ସମ୍ପର୍କ ଥିବାରୁ ତାହାର ନାମ 'ନାଟ୍ୟ' ହୋଇଥିବା ସମ୍ଭବ · ଯାହାର ଅର୍ଥ ନୃତ୍ୟକରିବାର ବସ୍ତୁ ବା ନଟଦ୍ୱାରା ପ୍ରଦର୍ଶିତ । ହରିବଂଶ କାବ୍ୟରେ ମଧ୍ୟ ଉଲ୍ଲେଖ ଅଛି "ନାଟକମ୍ ନନୃତୁଃ" ଅର୍ଥାତ୍ ନାଟକକୁ ନୃତ୍ୟ କରିଥିଲେ । ( ହରିବଂଶ କଲିକତା ୧୮୨୭ ଶକ, ୧୧୨ ୯୩, ୨୮, ୬୧୪ ପୃଷ୍ଠା । )

ଏ ସମସ୍ତ ଆଲୋଚନା କଲେ ଦେଖାଯାଏ ଯେ ଅଭିନୟ, ନୃତ୍ୟ ଓ ନାଟ୍ୟର ପ୍ରାଣ ।

**ଅଭିନୟ ଓ ଚିତ୍ରକଳା**—ନୃତ୍ୟଶାସ୍ତ୍ର ଏବଂ ଅନ୍ୟାନ୍ୟ କେତେକ ଶାସ୍ତ୍ରରେ ଅଭିନୟକୁ ନୃତ୍ୟର ଏକ ଆବଶ୍ୟକୀୟ ଅଙ୍ଗରୂପେ ଗ୍ରହଣ କରାଯାଇଅଛି । ବିଷ୍ଣୁଧର୍ମୋତ୍ତରପୁରାଣ (ଭେଙ୍କଟେଶ୍ୱର ସଙ୍କଳିତ ଦ୍ୱିତୀୟ · ଅଧ୍ୟାୟ ଚତୁର୍ଥ ଶ୍ଳୋକ)ରେ ବର୍ଣ୍ଣିତ ହୋଇଅଛି ଯେ ଚିତ୍ରକଳାକୁ ବ୍ୟକ୍ତ କରିବାପାଇଁ ନୃତ୍ୟର ନିୟମାନୁସାରେ ପରିଚିତ ହେବା ଏକାନ୍ତ ଆବଶ୍ୟକ । ଏଥିପାଇଁ ନୃତ୍ୟର ନିୟମ ପଦ୍ଧତି ସହିତ ପରିଚିତ . ଏକାନ୍ତ ଆବଶ୍ୟକ । ଏଥିନିମନ୍ତେ ନୃତ୍ୟ ଅନ୍ତର୍ଗତ ଅଭିନୟକୁ ସମ୍ମିଳିତ କରିବା ଏକାନ୍ତ ବାଞ୍ଛନୀୟ । ଚିତ୍ରକଳା ସମ୍ବନ୍ଧରେ ଜ୍ଞାନପ୍ରାପ୍ତି ନିମିତ୍ତ ଅଭିନୟ ସମ୍ବନ୍ଧରେ ଜ୍ଞାନଲାଭ କରିବା ଏକ ମୁଖ୍ୟ ସାଧନ ଅଟେ । ଏହାଦ୍ୱାରା ଚିତ୍ରଶିଳ୍ପୀ ମାନବର ଅନ୍ତରତମ ସୂକ୍ଷ୍ମାତିସୂକ୍ଷ୍ମ ଭାବନାଗୁଡ଼ିକୁ ଏବଂ ବିଭିନ୍ନ ପରିସ୍ଥିତିରେ ସୃଷ୍ଟ ଶାରୀରିକ ମାନସିକ ପରିବର୍ତ୍ତନଗୁଡ଼ିକୁ ଚିତ୍ରଣ କରିବାରେ ସମର୍ଥ

ହୋଇପାରିବ । ଅଭିନୟର ମୂଳ୍ୟ ବାସ୍ତବରେ ଏକ କ୍ରମବଦ୍ଧ– ଅଧ୍ୟୟନ ଏବଂ ଏହା ସୌନ୍ଦର୍ଯ୍ୟାତ୍ମକ ଭାବକୁ ପ୍ରକଟ କରିବାରେ ସାହାଯ୍ୟ କରେ । ଅଭିନୟରେ ଶିର, ହସ୍ତ ପାଦ ଆଦିର ବିଭିନ୍ନ ପ୍ରକାର ସଞ୍ଚାଳନ ଚିତ୍ରକଳା ଶିକ୍ଷାର୍ଥୀମାନଙ୍କୁ ମାନବୀୟ ରୂପର ବାସ୍ତବ ସ୍ୱରୂପ ପ୍ରକଟ କରିବାରେ ଏବଂ ଭଙ୍ଗୀର ବିଭିନ୍ନତା ଦେଖାଇବାରେ ସାହାଯ୍ୟ କରେ । ଅଭିନୟ ଏକପ୍ରକାର ଶରୀରବିଜ୍ଞାନ ଅଟେ, ଯାହାକି ମାନବର ବିଭିନ୍ନ ଦଶାକୁ ପ୍ରଦର୍ଶିତ କରେ ଏବଂ ତଦନୁରୂପ ଚିତ୍ରନିଷ୍ପତ୍ତିରେ ସହାୟକ ହୁଏ ।

'ଚିତ୍ରସୂତ୍ର' ନାମକ ଗ୍ରନ୍ଥରେ ମଧ୍ୟ ଉଲ୍ଲେଖ ଅଛି ଯେ ପୂର୍ବକାଳରେ ଚିତ୍ରଶିଳ୍ପୀମାନଙ୍କୁ ପ୍ରଥମେ ନୃତ୍ୟଶିକ୍ଷା କରିବାକୁ ପଡୁଥିଲା । ସେଥିପାଇଁ ନୃତ୍ୟକୁ ଚିତ୍ରକଳାର ଏକ ଅଙ୍ଗ ଭାବରେ ଗ୍ରହଣ କରାଯାଉଥିଲା । (Fundamentals of Indian Art by S. N. Das Gupta Page 61 and Indian Art by K. Bharatha Iyar Page 65)

ଭାରତୀୟ ନାଟକଗୁଡ଼ିକର କଥାବସ୍ତୁରେ ଏକ ପ୍ରଧାନ ଉପାଦାନ ଥିଲା ଚିତ୍ରକର୍ମ । ପ୍ରାଚୀନ ରଙ୍ଗଶାଳାଗୁଡ଼ିକ ଚିତ୍ର ଏବଂ ଚିତ୍ରପଟ୍ଟ ଦ୍ୱାରା ସଜ୍ଜିତ ହେଉଥିଲା । ଧାର୍ମିକ ଓ ଐତିହାସିକ ଆଖ୍ୟାନ ସମ୍ବନ୍ଧୀୟ ଲମ୍ବ ଲମ୍ବ ଚିତ୍ରପଟ ତିଆରି ହେଉଥିଲା । ବାତ୍ସାୟନଙ୍କ 'କାମସୂତ୍ର'ରେ ଏପରି ଚିତ୍ରପଟର ନାମ "ଆଖ୍ୟା– ନକ ପଟ୍ଟ" ଦିଆଯାଇଅଛି । ରଙ୍ଗଶାଳାରେ ଚିତ୍ର ଏବଂ ନାଟ୍ୟକୁ ମଙ୍ଗଳଜନକ ବୋଲି ଗ୍ରହଣ କରାଯାଇଥିଲା । ନାଟ୍ୟ ଶାସ୍ତ୍ରାନୁଯାୟୀ ଲତାବନ୍ଧରେ କମଳ ଏବଂ ହଂସର ଚିତ୍ର ଅଙ୍କନ କରାଯାଉଥିଲା ।

ନାଟକରେ ପ୍ରେମୀ ଓ ପ୍ରେମିକାଙ୍କର ସଂଯୋଗ ଏବଂ ବିୟୋଗରେ ଚିତ୍ର ଏକ ବଡ଼ ଉପକରଣ ଥିଲା । 'ମୃଚ୍ଛକଟିକ' ନାଟକରେ ବସନ୍ତସେନା ଚାରୁଦତ୍ତର, 'ଶକୁନ୍ତଳା' ନାଟକରେ

ବିରହୀ ଦୁଷ୍ମନ୍ତ ଶକୁନ୍ତଳାଙ୍କ ଚିତ୍ର ଆଙ୍କିଛନ୍ତି । 'ରତ୍ନାବଳୀ' ନାଟକରେ ଚିତ୍ରଫଳକ ହିଁ ନାଟକର ଆତ୍ମା । ରଙ୍ଗଶାଳାର ସ୍ତମ୍ଭଗୁଡ଼ିକରେ ଚିତ୍ରିତ କାଷ୍ଠମୂର୍ତ୍ତି ସ୍ଥାପନ କରାଯାଉଥିଲା । ଏ ସମସ୍ତରୁ ସ୍ପଷ୍ଟ ଅନୁମିତ ହେଉଅଛି ଯେ ଅଭିନୟ ସହିତ ଚିତ୍ରକଳାର ସମ୍ପର୍କ ଅତୀବ ଘନିଷ୍ଠ ।

## ଗୀତ ଓ ଅଭିନୟ

ଗୀତ, ବାଦ୍ୟ ଓ ନୃତ୍ୟ ପରସ୍ପର ଉପରେ ନିର୍ଭର କରୁଥିବାରୁ ଶାସ୍ତ୍ରକାରଗଣ ଏଗୁଡ଼ିକୁ ଏକ ସାଧାରଣ ସଂଜ୍ଞା ଦେଇଥିଲେ 'ସଙ୍ଗୀତ' । ଶାସ୍ତ୍ରରେ ଲେଖାଅଛି "ଗୀତବାଦିତ୍ର-ନୃତ୍ୟାନାଂ ତ୍ରୟଂ ସଙ୍ଗୀତମୁଚ୍ୟତେ ।" ଏହାର ଅର୍ଥ ଗୀତ, ବାଦ୍ୟ, ଓ ନୃତ୍ୟକୁ 'ସଙ୍ଗୀତ' ବୋଲଯାଏ । ନୃତ୍ୟ ସହିତ ଅଭିନୟର ଘନିଷ୍ଠ ସମ୍ପର୍କ ରହିଛି । କାରଣ ଅଭିନୟ ସହକାରେ ଯେଉଁ ନୃତ୍ୟ କରାଯାଏ, ତାହାକୁହିଁ କେବଳ ନୃତ୍ୟ ବୋଲଯାଏ । ନୃତ୍ୟ ସହିତ ଗୀତ ଓ ବାଦ୍ୟର ସମ୍ପର୍କ ମଧ୍ୟ ଅବିଚ୍ଛିନ୍ନ । ଗୀତ ଓ ବାଦ୍ୟ ନ ହେଲେ ନୃତ୍ୟ ସମସ୍ତ ମାଧୁର୍ଯ୍ୟ ହରାଏ । ତେଣୁ ଗୀତ ସହିତ ଅଭିନୟର ଯେ ଗୂଢ଼ ସମ୍ପର୍କ ରହିଛି ତାହା ନିଃସନ୍ଦେହରେ କୁହାଯାଇ ପାରେ ।

ଆମ ଦେଶରେ ବହୁ ଯୁଗରୁ ଗୀତାଭିନୟର ପ୍ରଚଳନ ରହି ଆସିଅଛି । ଗୀତ ଗାଇବା ସଙ୍ଗେ ସଙ୍ଗେ ଅଭିନୟ କରିବା ଏ ଦେଶର ଏକ ସ୍ୱତନ୍ତ୍ର ଶିଳ୍ପ । ନୃତ୍ୟ କରିବା ସଙ୍ଗେ ସଙ୍ଗେ ଗୀତ ଗାଇବା ବିଧି ବହୁ ଶାସ୍ତ୍ରରେ ଉଲ୍ଲେଖ ଥିବାର ଦେଖାଯାଏ । ଭାରତୀୟ ନାଟକର ଜନ୍ମ ପୂର୍ବରୁ ଗୀତାଭିନୟହିଁ ବିଶେଷ ପ୍ରସାର ଲାଭ କରିଥିଲା । ସେଥିପାଇଁ ପ୍ରାଚୀନ ଭାରତୀୟ ସାହିତ୍ୟ ବିଶେଷ ରୂପରେ କାବ୍ୟମୟ । ରାମଲୀଳା, ରାସଲୀଳା, ଗୋଟିପୁଅ ନୃତ୍ୟ, ସଖୀନାଚ ଇତ୍ୟାଦି ଗୀତାଭିନୟର ପ୍ରକୃଷ୍ଟ ଉଦାହରଣ ।

# ଲୋକାଭିନୟ

ନୃତ୍ୟ ଏବଂ ଅଭିନୟ ଦ୍ୱାରା ଜୀବନର ପ୍ରତ୍ୟେକ ଦିଗ, ପ୍ରତ୍ୟେକ କ୍ଷେତ୍ର ଏବଂ ପ୍ରତ୍ୟେକ ଗତି ପ୍ରେରିତ ଓ ପ୍ରଭାବିତ । ନୃତ୍ୟ, ନାଟ୍ୟ ଏବଂ ଅଭିନୟର ଉତ୍ପତ୍ତି ପ୍ରାକୃତିକ ବାତାବରଣ ମଧ୍ୟରୁ ହୋଇଅଛି । ଏହା ନିଶ୍ଚିତ ଯେ ପ୍ରାକୃତିକ ବାତାବରଣ ଏବଂ ବୌଦ୍ଧିକ ବିକାଶ ଦ୍ୱାରା ନୃତ୍ୟ, ନାଟ୍ୟ ଓ ଅଭିନୟ ଲୋକ ସମ୍ମୁଖରେ କଳାରୂପରେ ପ୍ରତିଭାତ ହୋଇ ପାରିଛି । ସର୍ବପ୍ରଥମେ ଏଗୁଡ଼ିକର ରୂପ ଲୋକନୃତ୍ୟ ଲୋକନାଟ୍ୟ ଏବଂ ଲୋକାଭିନୟରେ ପର୍ଯ୍ୟବସିତ ଥିଲା । କ୍ରମଶଃ ସଂସ୍କାର ଓ ସଂସ୍କୃତିର ପ୍ରଭାବରେ ଏଗୁଡ଼ିକୁ ନାଗରିକ ବା ଶାସ୍ତ୍ରୀୟ ରୂପ ଦିଆଗଲା ।

ମନୋବୈଜ୍ଞାନିକ ଦୃଷ୍ଟିକୋଣରୁ ବିଚାର କଲେ ପ୍ରତୀତ ହୁଏ ଯେ ଲୋକନୃତ୍ୟ ସମସ୍ତ କଳା ମଧ୍ୟରେ ପ୍ରାଚୀନ ଅଟେ । କାରଣ ଭାବାଭିବ୍ୟକ୍ତି ପଦ୍ଧତି ଏହାର ମୂଳ ସମ୍ବନ୍ଧ । ଭାବ ପ୍ରକାଶରେ ଆକାଂକ୍ଷା ଓ ଜିଜ୍ଞାସା ମନୁଷ୍ୟର ଜନ୍ମଗତ ସ୍ୱଭାବ । ଅନୁମାନ କରାଯାଏ ଯେ ସୃଷ୍ଟିର ପ୍ରାରମ୍ଭରେ ମାନବ ନିଜ ଭାବକୁ ପ୍ରକଟ କରିବା ପାଇଁ ଶରୀରର ହାବଭାବକୁ ହିଁ ଆଶ୍ରୟ କରି ଚାଲୁଥିଲା । ଭାବ ପ୍ରକାଶରେ ସାର୍ଥକ ମୁଦ୍ରାଗୁଡ଼ିକ ହିଁ ନାଟ୍ୟ-ଶାସ୍ତ୍ରରେ 'ନୃତ୍ୟ' ରୂପେ ବର୍ଣ୍ଣିତ ଏବଂ ନିରର୍ଥକ ମୁଦ୍ରାଗୁଡ଼ିକ 'ନୃତ୍ତ' ନାମରେ ବର୍ଣ୍ଣିତ ହୋଇଅଛି ।

କିମ୍ବଦନ୍ତୀ ଅଛି ଯେ ତ୍ରିପୁର ରାକ୍ଷସକୁ ବଧକରି ପ୍ରସନ୍ନ ଚିତ୍ତରେ ଶିବ ନର୍ତ୍ତନ କରିଥିଲେ । ସେଇଠାରୁ ନୃତ୍ୟକଳାର ସୃଷ୍ଟି ହେଲା । ବ୍ରହ୍ମା ତ୍ରିପୁରର ରକ୍ତ ମାଟିରେ ଗୋଳାଇ ମୃଦଙ୍ଗ (ମୃତ୍ତ+ଅଙ୍ଗ) ତିଆରି କରି ତାହାର ଚମଡ଼ା ସେଥିରେ ଲଗାଇଲେ, ଏବଂ ତାଙ୍କ ପୁତ୍ର ଗଣପତିଙ୍କୁ ତାହା ବଜାଇ ତାଳ ଦେବାକୁ କହିଲେ । ସେହିଠାରୁ ତାଳର ସୃଷ୍ଟି ହେଲା ଏବଂ ସେହି ତାଳ ଗୀତ ଏବଂ ବାଦ୍ୟରେ ପ୍ରୟୋଗ ହେଲା ।

ଅନ୍ୟ ଏକ କିମ୍ବଦନ୍ତୀ ଅନୁସାରେ, ଯେତେବେଳେ ଶିବ ତାଣ୍ଡବ ନୃତ୍ୟରେ ବିଭୋର ଥିଲେ, ପାର୍ବତୀ ମଧ୍ୟ ଏହି ନୃତ୍ୟ ଦେଖି ବିଭୋର ହୋଇ ପଡ଼ିଲେ ଓ ସ୍ୱତଃ ନୃତ୍ୟ କରିବାକୁ ଲାଗିଲେ । ଶିବଙ୍କର ନୃତ୍ୟ ତାଣ୍ଡବ (ଉଦ୍ଧତ) ଏବଂ ପାର୍ବତୀଙ୍କ ନୃତ୍ୟ ଲାସ୍ୟ (ସୁକୁମାର) । ତାଙ୍କର ଅନୁଚରଗଣ ମଧ୍ୟ ଏହି ନୃତ୍ୟ ଶିକ୍ଷା କରିଥିଲେ । ଗଣେଶ, ତାଣ୍ଡବରୁ 'ତା' ଏବଂ ଲାସ୍ୟରୁ 'ଲ' ନେଇ ତାଳର ରଚନା କରିଥିଲେ ।

ବହୁ ପ୍ରାଚୀନ ଶାସ୍ତ୍ର ଗୁଡ଼ିକର ମତାନୁଯାୟୀ ନୃତ୍ୟ, ନାଟ୍ୟ ଏବଂ ଅଭିନୟର ସୃଷ୍ଟି ବିଷ୍ଣୁଙ୍କ ଦ୍ୱାରା ହୋଇଥିଲା । ଅଧିକାଂଶ ସମୀକ୍ଷକ ମାନଙ୍କ ମତ ଏହି ଯେ ଶିବ ଏକ ଅନାର୍ଯ୍ୟ ଦେବତା ଅଟନ୍ତି ଏବଂ ଶିବଙ୍କର ଉପାସନା ଭାରତୀୟ ସଂସ୍କୃତିରେ ବହୁ ଖ୍ରୀଷ୍ଟାବ୍ଦ ପରେ ପ୍ରଚଳିତ ହେଲା । ଶିବ ଆର୍ଯ୍ୟ ଥିଲେ କି ଅନାର୍ଯ୍ୟ ଥିଲେ ଏ ସ୍ଥଳରେ ତାହା ବିଚାର୍ଯ୍ୟ ନୁହେଁ । କିନ୍ତୁ ଏହା ସତ୍ୟ ଯେ ଶିବ ନିଜର ସମସ୍ତ ସଜ୍ଜା, ସ୍ୱରୂପ, ସିଦ୍ଧାନ୍ତ ଓ ବ୍ୟବହାରରେ ଗରିବର ଏକ ମାତ୍ର ଦେବତା । ମୃତ୍ତିକାରେ ମୂର୍ତ୍ତି ତିଆରିକରି ବେଲପତ୍ର ଏବଂ ଧୁତୁରାଫୁଲ ଚଢ଼ାଇ ତାଙ୍କର ପୂଜା ସହଜରେ କରାଯାଏ । ତାଙ୍କୁ ପ୍ରସନ୍ନ କରିବା ନିମିତ୍ତ କରତାଳ ଓ ମୃଦଙ୍ଗ ଆଦି ବାଦ୍ୟଯନ୍ତ୍ରର ଆଡ଼ମ୍ବର ବିଶେଷ ଦରକାର ହୁଏ ନାହିଁ । ମୁଖ ବାଦ୍ୟରେ ହିଁ ସେ ସନ୍ତୋଷ ଲାଭ କରନ୍ତି । 'ଉଦ୍ଭଟସାଗର' ନାମକ ଗ୍ରନ୍ଥରେ ଲେଖାଅଛି ।

''ସ୍ୱୟଂ ସୁରେଶଃ ଶ୍ୱଶୁରୋ ନଗେଶଃ ।
ସଖା ଧନେଶସ୍ତନୟୋ ଗଣେଶଃ ॥
ତଥାପି ଭିକ୍ଷାଂ କୁରୁତେ ମହେଶଃ
ବଳବତୀ କେବଳମୀଶ୍ୱରେଚ୍ଛା ।।''

ନିଜେ ଦେବାଧିପତି, ଶ୍ୱଶୁର ନଗାଧିରାଜ, ସଖା ଧନେଶ କୁବେର ଏବଂ ପୁତ୍ର ଗଣେଶ ହୋଇ ସୁଦ୍ଧା ଶିବ ଭିକ୍ଷା କରନ୍ତି । ଶିବଙ୍କ ଏହି ପରିଚୟରୁ ପ୍ରମାଣ ମିଳୁଛି ଯେ ସେ ଜନ ଦେବତା

ଅଟମ୍ଭ ଏବଂ ଜନ ସମାଜର ଚିତ୍ତକୁ ରଞ୍ଜନ ନିମିତ୍ତ ସେ ନୃତ୍ୟର ଆବିଷ୍କାର କରିଥିଲେ, ଯାହାକି ପ୍ରାରମ୍ଭରେ ଲୋକନୃତ୍ୟ ବା ଜନନୃତ୍ୟ ରୂପରେ ପ୍ରଚଳିତ ହେଲା । ବୁଦ୍ଧି ଓ ନାଗରିକତାର ବିକାଶ ସଙ୍ଗେ ସଙ୍ଗେ ଲୋକନୃତ୍ୟର ସାଧାରଣୀକରଣ ଲୋପପାଇଲା ଏବଂ ତାହାର ପୂର୍ଣ୍ଣ ଶାସ୍ତ୍ରୀୟକରଣ କରାଗଲା ।

ନାଟ୍ୟଶାସ୍ତ୍ର ଆଦି ଗ୍ରନ୍ଥରୁ ଏହା ସ୍ପଷ୍ଟ ପ୍ରମାଣିତ ହୁଏ ଯେ ଶିବ ହିମାଳୟରେ ନୃତ୍ୟ କରୁଥିଲେ । ସ୍ୱୟଂ ଶିବ ନଗର ନିବାସୀ ନ ହୋଇ ପର୍ବତ ଓ ବନଦେଶରେ ବାସ କରୁଥିଲେ । ଏଥିରୁ ସିଦ୍ଧ ହୁଏ ଯେ ନୃତ୍ୟ ସର୍ବ ପ୍ରଥମେ ଲୋକନୃତ୍ୟ ରୂପରେ ପ୍ରକଟିତ ହୋଇଥିଲା ଏବଂ ଅନୁମିତ ହୁଏ ଯେ ଆଦିମ ମନୁଷ୍ୟ ଯେତେବେଳେ ଭାଷାର ଉଚିତ ବ୍ୟବହାର କରିବାରେ ଅସମର୍ଥ ଥିଲା, ସେତେବେଳେ ମନୋଭାବଗୁଡ଼ିକୁ ସେ ହାବ, ଭାବ ଓ ଚେଷ୍ଟାଦ୍ୱାରା ନୃତ୍ୟ ମାଧ୍ୟମରେ ବ୍ୟକ୍ତ କରୁଥିଲା । ଏହିପ୍ରକାର ଭାବାଭିବ୍ୟକ୍ତିର ମୂଳରୂପ ଆଜି ମଧ୍ୟ ଆଦିମ ଅଧିବାସୀଗଣଙ୍କର ନୃତ୍ୟରେ ଦେଖିବାକୁ ମିଳେ । ଶିବଙ୍କର ଅନ୍ତରିକ୍ତକାଳାନ୍ତର ପରେ ଶାସ୍ତ୍ରକାରଗଣ ବିଷ୍ଣୁ, କୃଷ୍ଣ ଆଦି ବିଶିଷ୍ଟ ଦେବତାଙ୍କର ରୂପ, ଗୁଣ ଓ କ୍ରିୟାଗୁଡ଼ିକର କଳ୍ପନା ନୃତ୍ୟଦ୍ୱାରା କରିଥିବା ସମ୍ଭବ ।

ନାନାବିଧ ନୃତ୍ୟର ଉତ୍ପତ୍ତି ଓ ବିକାଶ ମୂଳରେ ମାନବଜାତିର ସମୂହଗତ ଭାବନା ଏକାନ୍ତ ଭାବେ ଜଡ଼ିତ । ଅନୁମିତ ହୁଏ ଯେ ପ୍ରତ୍ୟେକ ଗୋଷ୍ଠି, ନିଜର ଭାବପ୍ରକାଶ ନିମିତ୍ତ କେତେକ ସଙ୍କେତ ସୃଷ୍ଟି କଲେ । ବିଭିନ୍ନ ଗୋଷ୍ଠି ମଧ୍ୟରେ ଏକତା ନ ଥିବାରୁ ସଙ୍କେତ ମଧ୍ୟ ବିଭିନ୍ନ ହେଲା । ସେହି ସଙ୍କେତର ମାର୍ଜିତ ରୂପକୁ ଆମେ ଆଜି ନୃତ୍ୟମୁଦ୍ରା ରୂପେ ଉପଲବ୍ଧି କରୁଅଛୁଁ । ଯଦ୍ୟପି ସେହି ମୁଦ୍ରାଗୁଡ଼ିକର ଶାସ୍ତ୍ରୀୟକରଣ ହୋଇଛି ତଥାପି ସେଗୁଡ଼ିକର ମୂଳରେ ଲୋକଭାବନା ନିହିତ ।

ମଣିପୁରୀ କଥକ୍, କଥକାଲୀ, ଭରତ ନାଟ୍ୟମ୍ ଏବଂ ଓଡ଼ିଶୀ ଇତ୍ୟାଦି ନୃତ୍ୟଗୁଡ଼ିକର ଶାସ୍ତ୍ରୀୟ ରୂପରେ ଲୋକନୃତ୍ୟ ଏବଂ ଲୋକଭାବନାର ସ୍ପଷ୍ଟ ଛାୟାପାତ ଦେଖାଯାଏ । ନିଃସନ୍ଦେହରେ କୁହାଯାଇ ପାରେ ଯେ ଏ ସମସ୍ତ ନୃତ୍ୟ ପ୍ରଥମେ ବିଶୁଦ୍ଧ ଲୋକନୃତ୍ୟ ହିସାବରେ ପର୍ଯ୍ୟବସିତ ଥିଲା । କଥାକାଳୀ ଓ ମଣିପୁରୀ ନୃତ୍ୟ ସମ୍ବନ୍ଧରେ ଏହା ଅଧିକ ଗୁରୁତ୍ୱ ଦେଇ କୁହାଯାଇ ପାରେ । ଏତଦ୍ ବ୍ୟତୀତ ରୁଷିଆର ପ୍ରସିଦ୍ଧ ନୃତ୍ୟ ସମାଲୋଚକ ଟାମାରା ଟାକେଙ୍କୋ (Tamara Takcenko) ଲେଖିଛନ୍ତି "Every form of the D3ncing art takes its source in folk Dances"

ଅଭିନୟ ଲୋକ ଜୀବନ, ଲୋକଭାବନା ଏବଂ ଲୋକାନୁଭୂତିର ଏକ ସାକାର ବ୍ୟାଖ୍ୟା ଅଟେ । କାରଣ ଏହା ମୂଳରେ ଜୀବନର ଉଲ୍ଲାସ ନିହିତ । ଏହା ନିଃସନ୍ଦେହ ଯେ ଲୋକନୃତ୍ୟ ଆତ୍ମ ସମର୍ପଣ କରି ଶାସ୍ତ୍ରୀୟ ନୃତ୍ୟକୁ ଜୀବନ ଓ ଗତି ପ୍ରଦାନ କରିଅଛି ।

## ସଂସ୍କାର ପଦ୍ଧତି ଓ ଅଭିନୟ

ଅଭିନୟ କ୍ଷେତ୍ରକୁ ବୈଦିକ ସଂସ୍କାରର ଦାନ ଯଥେଷ୍ଟ । କାରଣ ନାଟ୍ୟଶାସ୍ତ୍ର ଏବଂ ଅନ୍ୟାନ୍ୟ ଶାସ୍ତ୍ରରେ ବର୍ଣ୍ଣିତ ହୋଇଅଛି ଯେ ସୃଷ୍ଟିକର୍ତ୍ତା ବ୍ରହ୍ମା ପ୍ରଥମେ ଚାରିଗୋଟି ବେଦରୁ ସାର ସଂଗ୍ରହ କରି ସଙ୍ଗୀତ ବେଦ ସୃଷ୍ଟି କରିଥିଲେ (ପୂର୍ବଂ ଚତୁର୍ଣ୍ଣାଂ ବେଦାନାଂ ସାରମାକୃଷ୍ୟ ପଦ୍ମଭୂଃଇମଂତୁ ପଞ୍ଚମଂ ବେଦଂ ସଙ୍ଗୀତାଖ୍ୟମକଳ୍ପୟତ୍) । ଏହି ବେଦ ଋକ୍ ବେଦରୁ ପାଠ, ସାମବେଦରୁ ଗୀତ, ଯଜୁର୍ବେଦରୁ ଅଭିନୟ ଓ ଅଥର୍ବ ବେଦରୁ ରସ ଗ୍ରହଣ କରିଥିଲା । ତେଣୁ ଯଜୁର୍ବେଦରୁ ଅଭିନୟ ସୃଷ୍ଟି ହୋଇଥିବା ସମ୍ଭବ । ଏତଦ୍‌ବ୍ୟତୀତ ସାମବେଦ ଗାନ କରିବା ସମୟରେ

ବିଭିନ୍ନ ପ୍ରକାର ଅଙ୍ଗଭଙ୍ଗୀ କରିବାର ବିଧି ଅଛି । ବୈଦିକ ସାନ୍ଧ୍ୟ ପୂଜା ପଦ୍ଧତି, ଗାୟତ୍ରୀ ଜପ ଇତ୍ୟାଦିରେ ବହୁପ୍ରକାର ହସ୍ତମୁଦ୍ରାର ବ୍ୟବହାର ଦେଖାଯାଏ । ତାନ୍ତ୍ରିକ ପୂଜାପଦ୍ଧତିରେ ମଧ୍ୟ ହସ୍ତମୁଦ୍ରାର ବହୁଳ ବ୍ୟବହାର ଦେଖାଯାଏ । ତେଣୁ ସଂସ୍କାର ପଦ୍ଧତି ସହିତ ଯେ ଅଭିନୟର ଗୂଢ଼ ସମ୍ପର୍କ ରହିଛି, ତାହା ନିଃସନ୍ଦେହରେ ବୋଲିଯାଇ ପାରେ ।



### ନନ୍ଦିକେଶ୍ୱର-ବିରଚିତମ୍

# ଅଭିନୟ ଦର୍ପଣମ୍

## ନମସ୍କ୍ରିୟା

ଆଙ୍ଗିକଂ ଭୁବନଂ ଯସ୍ୟ ବାଚିକଂ ସର୍ବବାଙ୍ମୟମ୍ ।
ଆହାର୍ଯ୍ୟଂ ଚନ୍ଦ୍ରତାରାଦି ତଂ ନୁମଃ ସାତ୍ତ୍ୱିକଂ ଶିବମ୍ ।। ୧ ।।

ଯାହାଙ୍କର ଭୁବନ ହେଉଛି ଆଙ୍ଗିକ, ସମସ୍ତ ବାଙ୍ମୟ (ଶବ୍ଦସମୂହ) ଯାହାଙ୍କର ବାଚିକ, ଚନ୍ଦ୍ର ତାରା ଆଦି ଯାହାଙ୍କର ଆହାର୍ଯ୍ୟ (ବେଶଭୂଷା), ସେହି ସାତ୍ତ୍ୱିକ ଶିବଙ୍କୁ ନମସ୍କାର ।

## ନାଟ୍ୟୋତ୍ପତ୍ତିଃ

ନାଟ୍ୟବେଦଂ ଦଦୌ ପୂର୍ବଂ ଭରତାୟ ଚତୁର୍ମୁଖଃ ।
ତତଶ୍ଚ ଭରତଃ ସାର୍ଦ୍ଧଂ ଗନ୍ଧର୍ବାପ୍ସରସାଂ ଗଣୈଃ ।।୨।।

ନାଟ୍ୟଂ ନୃତ୍ତଂ ତଥା ନୃତ୍ୟମଗ୍ରେ ଶମ୍ଭୋଃ ପ୍ରଯୁକ୍ତବାନ୍ ।
ପ୍ରୟୋଗମୁଦ୍ଧତଂ ସ୍ମୃତ୍ୱା ସ୍ୱପ୍ରଯୁକ୍ତଂ ତତୋ ହରଃ ।।୩।।

ତଣ୍ଡୁନା ସ୍ୱଗଣାଗ୍ରଣ୍ୟା ଭରତାୟ ନ୍ୟଦୀଦିଶତ୍ ।
ଲାସ୍ୟମସ୍ୟାଗ୍ରତଃ ପ୍ରୀତ୍ୟା ପାର୍ବତ୍ୟା ସମଦୀଦିଶତ୍ ।।୪।।

ବୁଦ୍ଧ୍ୱାଽଥ ତାଣ୍ଡବଂ ତଣ୍ଡୋର୍ମର୍ତ୍ତ୍ୟେଭ୍ୟୋ ମୁନୟୋଽବଦନ୍
ପାର୍ବତୀ ତ୍ୱନୁଶାସ୍ତି ସ୍ମ ଲାସ୍ୟଂ ବାଣାତ୍ମଜାମୁଷାମ୍ ।।୫।।

ତସ୍ମା ଦ୍ଵାରବଣ୍ଟଗୋପ୍ୟସ୍ତାଭିଃ ସୌରାଷ୍ଟ୍ରଯୋଷିତଃ ।
ତାଭିସ୍ତୁ ଶିକ୍ଷିତା ନାର୍ଯ୍ୟୋ ନାନାଜନ ପଦାସ୍ପଦାଃ ।। ୭ ।।
ଏବଂ ପରମ୍ପରାପ୍ରାପ୍ତମେତଲ୍ଲୋକେ ପ୍ରତିଷ୍ଠିତମ୍ ।

ପୂର୍ବକାଳରେ ବ୍ରହ୍ମା ଭରତଙ୍କୁ ନାଟ୍ୟବେଦ ଅର୍ପଣ କରିଥିଲେ । ତାହାପରେ ଗନ୍ଧର୍ବ ଓ ଅପ୍‌ସରାଗଣଙ୍କ ସହିତ ଭରତ ନାଟ୍ୟ, ନୃତ୍ତ ଓ ନୃତ୍ୟର ପ୍ରଯୋଜନା ଶିବଙ୍କ ସମ୍ମୁଖରେ କରିଥିଲେ । ତା'ପରେ ଶିବ ଉଦ୍ଧତନୃତ୍ୟ (ତାଣ୍ଡବ)ର ପ୍ରୟୋଗକୁ ସ୍ମରଣ କରି ନିଜର ଗଣଶ୍ରେଷ୍ଠ ତଣ୍ଡୁଙ୍କଦ୍ୱାରା ଭରତଙ୍କୁ ଶିକ୍ଷା ଦିଆଇଥିଲେ । ପ୍ରୀତିବଶତଃ ତାଙ୍କ ଆଗରେ ପାର୍ବତୀଙ୍କଦ୍ୱାରା ଲାସ୍ୟ ନୃତ୍ୟର ଶିକ୍ଷା ଦିଆଇଥିଲେ । ଏହାପରେ ତଣ୍ଡୁଙ୍କଠାରୁ ତାଣ୍ଡବ ଶିକ୍ଷାକରି ମୁନିଗଣ ମର୍ତ୍ତ୍ୟବାସୀଙ୍କୁ କହିଥିଲେ । ସ୍ୱୟଂ ପାର୍ବତୀ ମଧ୍ୟ ବାଣାସୁର କନ୍ୟା ଊଷାଙ୍କୁ ଲାସ୍ୟନୃତ୍ୟ ଶିକ୍ଷା ଦେଇଥିଲେ । ସେ (ଊଷା) ଦ୍ୱାରକାର ଗୋପୀମାନଙ୍କୁ; ସେମାନେ ସୌରାଷ୍ଟ୍ରର ରମଣୀମାନଙ୍କୁ ଏବଂ ସେମାନେ ନାନାଦେଶର ରମଣୀମାନଙ୍କୁ ଶିକ୍ଷା ଦେଇଥିଲେ । ଏହିପରି ପରମ୍ପରାକ୍ରମେ ଏହା (ତାଣ୍ଡବ ଓ ଲାସ୍ୟନୃତ୍ୟ) ମର୍ତ୍ତ୍ୟଲୋକରେ ପ୍ରତିଷ୍ଠିତ ହେଲା ।

## ନାଟ୍ୟ ପ୍ରଶଂସା

ଋଗ୍‌ଯଜୁଃ ସାମବେଦେଭ୍ୟୋ ବେଦାଚ୍ଚାଥର୍ବଣଃ କ୍ରମାତ୍ ।।୭।।
ପାଠ୍ୟଂ ଚାଭିନୟଂ ଗୀତଂ ରସାନ୍ ସଂଗୃହ୍ୟ ପଦ୍ମଜଃ ।
ବ୍ୟଚୀରଚଚ୍ଛାସ୍ତ୍ରମିଦଂ ଧର୍ମକାମାର୍ଥମୋକ୍ଷଦମ୍ ।।୮।।
କୀର୍ତ୍ତିପ୍ରାଗଲ୍‌ଭ୍ୟସୌଭାଗ୍ୟବୈଦଗ୍‌ଧ୍ୟାନାଂ ପ୍ରବର୍ଦ୍ଧନମ୍ ।
ଔଦାର୍ଯ୍ୟସ୍ଥୈର୍ଯ୍ୟଧୈର୍ଯ୍ୟାଣାଂ ବିଳାସସ୍ୟ ଚ କାରଣମ୍ ।।୯।।
ଦୁଃଖାର୍ତ୍ତିଶୋକନିର୍ବେଦଖେଦବିଚ୍ଛେଦକାରଣମ୍ ।
ଅପି ବ୍ରହ୍ମପରାନନ୍ଦାଦିଦମଭ୍ୟଧିକଂ ମତମ୍ ।।୧୦।।
ଜହାର ନାରଦାଦୀନାଂ ଚିତ୍ତାନି କଥମନ୍ୟଥା ।

ବ୍ରହ୍ମା ଋଗ, ଯୂଜୁଃ (ଯଜୁ) ସାମ ଓ ଅଥର୍ବ ବେଦରୁ କ୍ରମଶଃ ପାଠ୍ୟ, ଅଭିନୟ, ଗୀତ ଓ ରସ ସଂଗ୍ରହ କରି ଧର୍ମ, କାମ,

ଅର୍ଥ ଓ ମୋକ୍ଷପ୍ରଦ; କାନ୍ତି, ପ୍ରାଗଲ୍‌ଭ୍ୟ, ସୌଭାଗ୍ୟ ଓ ପାଣ୍ଡିତ୍ୟ ପ୍ରବର୍ଦ୍ଧକ; ଔଦାର୍ଯ୍ୟ, ସ୍ଥୈର୍ଯ୍ୟ, ଧୈର୍ଯ୍ୟ ଓ ବିଳାସର କାରଣ; ଦୁଃଖ. ପୀଡ଼ା, ଶୋକ, ନିର୍ବେଦ ଓ ଖେଦ ନାଶର କାରଣ ଏବଂ ବ୍ରହ୍ମାନନ୍ଦଠାରୁ ମଧ୍ୟ ଅଧିକ ଉତ୍କୃଷ୍ଟ ଏହି ଶାସ୍ତ୍ରକୁ ରଚନା କରିଥିଲେ । ଏପରି ହୋଇ ନ ଥିଲେ ନାରଦ ଆଦି ମହର୍ଷିମାନଙ୍କ ଚିତ୍ତକୁ ଏହା କିପରି ଅନୁରଞ୍ଜନ କରୁଥାନ୍ତା ?

## ନର୍ତ୍ତନଭେଦାଃ

ଏତଚ୍ଚତୁର୍ବିଧୋପେତଂ ନର୍ତ୍ତନଂ ତ୍ରିବିଧଂ ସ୍ମୃତମ୍ ॥୧୧॥
ନାଟ୍ୟଂ ନୃତ୍ତଂ ନୃତ୍ୟମିତି ମୁନିଭିର୍ଭରତାଦିଭିଃ ।

ଏହି ଚତୁଃପ୍ରକାର (ଆଙ୍ଗିକ, ବାଚିକ, ଆହାର୍ଯ୍ୟ ଓ ସାତ୍ତ୍ୱିକ) ଯୁକ୍ତ ନର୍ତ୍ତନକୁ ଭରତ ଆଦି ମୁନିଗଣ ନାଟ୍ୟ, ନୃତ୍ତ ଓ ନୃତ୍ୟ ଭେଦରେ ତିନି ପ୍ରକାର ବୋଲି କହିଛନ୍ତି ।

## ନର୍ତ୍ତନପ୍ରୟୋଗକାଳଃ

ଦ୍ରଷ୍ଟବ୍ୟୋ ନାଟ୍ୟନୃତ୍ୟେ ଚ ପର୍ବକାଳେ ବିଶେଷତଃ ॥୧୨॥
ନୃତ୍ତଂ ତଥ ନରେନ୍ଦ୍ରାଣାମଭିଷେକେ ମହୋତ୍ସବେ ।
ଯାତ୍ରାୟାଂ ଦେବଯାତ୍ରାୟାଂ ବିବାହେ ପ୍ରିୟସଙ୍ଗମେ ॥୧୩॥
ନଗରାଣାମଗାରାଣାଂ ପ୍ରବେଶେ ପୁତ୍ର ଜନ୍ମନି ।
ଶୁଭାର୍ଥିଭିଃ ପ୍ରୟୋକ୍ତବ୍ୟଂ ମାଙ୍ଗଲ୍ୟଂ ସର୍ବକର୍ମସୁ ।୧୪।

ବିଶେଷଭାବରେ ପର୍ବ (ଉତ୍ସବ) ସମୟରେ ନାଟ୍ୟ ଓ ନୃତ୍ୟ ଦ୍ରଷ୍ଟବ୍ୟ । ରାଜାଭିଷେକ, ମହୋତ୍ସବ, ଯାତ୍ରା, ଦେବଯାତ୍ରା, ବିବାହ, ପ୍ରିୟମିଳନ, ନଗର ବା ଗୃହପ୍ରବେଶ ଓ ପୁତ୍ରଜନ୍ମ ସମୟରେ ତଥା ସବୁ ମଙ୍ଗଳକର୍ମରେ ନୃତ୍ତକୁ ଶୁଭାର୍ଥୀଜନ ପ୍ରୟୋଗ କରିବା ଉଚିତ ।

## ନାଟ୍ୟମ୍

ନାଟ୍ୟଂ ତନ୍ନାଟକଂ ଚୈବ ପୂଜ୍ୟଂ ପୂର୍ବକଥାଯୁତମ୍ ।

ପୂର୍ବକଥା (ପୁରାଣ ବା ଐତିହାସିକ କଥା) ଯୁକ୍ତ ପ୍ରଶଂସନୀୟ ବିଷୟବସ୍ତୁକୁ ନାଟ୍ୟ ବା ନାଟକ କହନ୍ତି ।

## ନୃତ୍ତମ୍

ଭାବାଭିନୟହୀନଂ ତୁ ନୃତ୍ତମିତ୍ୟଭିଧୀୟତେ ॥୧୫॥

ଭାବ ଓ ଅଭିନୟହୀନ ନର୍ତ୍ତନକୁ ନୃତ୍ତ ନାମରେ ଅଭିହିତ କରାଯାଏ ।

## ନୃତ୍ୟମ୍

ରସଭାବବ୍ୟଞ୍ଜନାଦିଯୁକ୍ତଂ ନୃତ୍ୟମିତୀର୍ଯ୍ୟତେ ।
ଏତନ୍ନୃତ୍ୟ ମହାରାଜସଭାୟାଂ କଲ୍ପୟେତ୍ ସଦା ॥୧୬॥

ରସ, ଭାବ ଓ ବ୍ୟଞ୍ଜନାଦିଯୁକ୍ତ ନର୍ତ୍ତନକୁ ନୃତ୍ୟ ବୋଲାଯାଏ । ଏହି ନୃତ୍ୟ ସର୍ବଦା ମହାରାଜାମାନଙ୍କର ସଭାରେ ପ୍ରୟୋଗ ହେବା ବିଧେୟ ।

## ସଭାପତିଲକ୍ଷଣମ୍

ଶ୍ରୀମାନ୍ ଧୀମାନ୍ ବିବେକୀ ବିତରଣନିପୁଣୋ
ଗାନବିଦ୍ୟାପ୍ରବୀଣଃ ।
ସର୍ବଜ୍ଞଃ କୀର୍ତ୍ତିଶାଳୀ ସରସଗୁଣଯୁତୋ ହାବଭାବେଷ୍ୱଭିଜ୍ଞଃ ।
ମାତ୍ସର୍ଯ୍ୟଦ୍ୱେଷହୀନଃ ପ୍ରକୃତିହିତସଦାଚାରଶୀଲୋ ଦୟାଳୁ—
ର୍ଧୀରୋ ଦାନ୍ତଃ କଳାବାନଭିନୟଚତୁରୋଽସୌ ସଭାନାୟକଃ
ସ୍ୟାତ୍ ॥୧୭॥

ଶ୍ରୀମାନ୍, ବୁଦ୍ଧିମାନ, ବିବେକୀ, ବିତରଣରେ ନିପୁଣ, ଗାନ-ବିଦ୍ୟାପ୍ରବୀଣ, ସର୍ବଜ୍ଞ, କୀର୍ତ୍ତିଶାଳୀ, ସରସଗୁଣଯୁକ୍ତ, ହାବ ଓ ଭାବରେ ପଣ୍ଡିତ, ଈର୍ଷା ଦ୍ୱେଷ ବିହୀନ, ଜନତାର ହିତକାରୀ, ଦୟାଳୁ, ଧୀର, କ୍ଷମାବାନ୍, କଳାବାନ୍ ଓ ଅଭିନୟଚତୁର; ଏହିପରି ବ୍ୟକ୍ତି ସଭାର ନାୟକ ହେବା ଆବଶ୍ୟକ ।

## ମନ୍ତ୍ରୀ ଲକ୍ଷଣମ୍

ମେଧାଵିନ୍ତୁଷ୍ଟିରଶେଷଗୁଣପଟ୍ଟଃ ଶ୍ରୀମଦ୍ୟତଶାଲମଣ୍ଠା
ଵିବେକୀ ଗୁଣଦୋଷଭେଦନିପୁଣାଃ ଶୃଙ୍ଗାରଲୀଳାଯୁତାଃ ।
ମଧ୍ୟସ୍ଥା ନୟକୋବିଦାଃ ସହୃଦୟାଃ ସତ୍ପଣ୍ଡିତା ମନ୍ତ୍ରିଣେ

ଭାଷାଭେଦବିଚକ୍ଷଣାଃ ସୁକବୟୋ ଅସ୍ୟ ପ୍ରଭୋର୍ମନ୍ତ୍ରିଣଃ ॥୧୮॥

ମେଧାବୀ ଓ ସ୍ଥିର ସ୍ୱଭାବରେ ଗୁଣୀ, ଶ୍ରୀମାନ୍, ଯଶୋଭିଳାଷୀ, ସର୍ବଜ୍ଞ, ଗୁଣ ଓ ଦୋଷ ଦର୍ଶାଇବାରେ ନିପୁଣ, ଶୃଙ୍ଗାର ଲୀଳାଯୁକ୍ତ, ମଧ୍ୟସ୍ଥ, ମାନ୍ତ ପଣ୍ଡିତ, ସହୃଦୟ, ସୁପଣ୍ଡିତ, ଭାଷାଭେଦ ବିଚକ୍ଷଣ ଓ ସୁକବି ତାଙ୍କର ( ସଭାପତିଙ୍କର ) ମନ୍ତ୍ରୀ ହୁଅନ୍ତି ।

## ସଭାଲକ୍ଷଣମ୍

ସଭାକଳ୍ପତରୁର୍ଭାତି ବେଦଶାଖୋପଶୋଭିତଃ
ଶାସ୍ତ୍ରପୁଷ୍ପସମାକୀର୍ଣ୍ଣୋ ବିଦ୍ୱଦ୍ଭ୍ରମରଶୋଭିତଃ ॥୧୯॥

ବେଦରୂପକ ଶାଖାଦ୍ୱାରା ସମୃଦ୍ଧଶାଳୀ, ଶାସ୍ତ୍ରରୂପକ ପୁଷ୍ପଦ୍ୱାରା ପରିପୂର୍ଣ୍ଣ, ବିଦ୍ୱାନ୍ ରୂପକ ଭ୍ରମରଦ୍ୱାରା ପରିଶୋଭିତ ସଭା, କଳ୍ପତରୁ ସଦୃଶ ।

## ସଭାରଚନା

ଏବଂବିଧଃ ସଭାନାଥଃ ପ୍ରାଙ୍ମୁଖୋ ନିବେଶନ୍ ମୁଦା ।
ବର୍ତ୍ତେରନ୍ ପାର୍ଶ୍ୱୟୋସ୍ତସ୍ୟ କବିମନ୍ତ୍ରିସୁହୃଜ୍ଜନାଃ ॥୨୦॥
ତଦଗ୍ରେ ନର୍ତ୍ତନଂ କୁର୍ଯ୍ୟାତ୍ ତତ୍ ସ୍ଥଳଂ ରଙ୍ଗ ଉଚ୍ୟତେ ।
ରଙ୍ଗ ମଧ୍ୟେ ସ୍ଥିତେ ପାତ୍ରେ ତତ୍ସମୀପେ ନଟୋତ୍ତମଃ ॥୨୧॥
ଦକ୍ଷିଣେ ତାଳଧାରୀ ଚ ପାର୍ଶ୍ୱଦ୍ୱୟେ ମୃଦଙ୍ଗକୌ
ତୟୋର୍ମଧ୍ୟେ ଗୀତକାରୀ ଶ୍ରୁତିକାରସ୍ତଦନ୍ତିକେ ॥୨୨॥
ଏବଂ ତିଷ୍ଠେତ୍ କ୍ରମେଣୈବ ନାଟ୍ୟାଦୌ ରଙ୍ଗମଣ୍ଡଳୀ ।

ଏହିପରି ସଭାପତି ପୂର୍ବଦିଗକୁ ମୁଖକରି ଆନନ୍ଦରେ ବସିବେ । ତାଙ୍କର ଉଭୟ ପାର୍ଶ୍ୱରେ କବି, ମନ୍ତ୍ରୀ ଓ ମିତ୍ରଗଣ ରହିବେ । ତାହାଙ୍କ ସମ୍ମୁଖରେ ନୃତ୍ୟକରିବା ଉଚିତ ଓ ସେ ସ୍ଥଳକୁ ରଙ୍ଗ ବୋଲିଯାଏ । ରଙ୍ଗ ମଧ୍ୟସ୍ଥିତ ଶିଳ୍ପୀପାର୍ଶ୍ୱରେ ନଟୋତ୍ତମ (ଗୁରୁ), ଦକ୍ଷିଣରେ ତାଳଧାରୀ ଓ ଉଭୟ ପାର୍ଶ୍ୱରେ ଦୁଇଜଣ ମୃଦଙ୍ଗ ବାଦକ ଏବଂ ତାଙ୍କ ମଧ୍ୟରେ ଜଣେ ଗାୟକ ଓ ତାଙ୍କ ନିକଟରେ ଶ୍ରୁତିକାର (ପାଳିଆ) — ଏହି କ୍ରମରେ ନାଟ୍ୟ ପ୍ରାରମ୍ଭରେ ରଙ୍ଗମଣ୍ଡଳୀ ରହିବା ଆବଶ୍ୟକ ।

## ପାତ୍ରଲକ୍ଷଣମ୍

ତନ୍ୱୀ ରୂପବତୀ ଶ୍ୟାମା ପୀନୋନ୍ନତପୟୋଧରା ।।୨୩।।
ପ୍ରଗଲ୍‌ଭା ସରସା କାନ୍ତା କୁଶଳା ଗ୍ରହମୋକ୍ଷୟୋଃ ।
ବିଶାଳଲୋଚନା ଗୀତବାଦ୍ୟତାଳାନୁବର୍ତ୍ତିନୀ ।। ୨୪ ।।
ପରାର୍ଘ୍ୟଭୂଷାସମ୍ପନ୍ନା ପ୍ରସନ୍ନମୁଖପଙ୍କଜା ।
ଏବଂବିଧୋଗୁଣୋପେତା ନର୍ତ୍ତକୀ ସମୁଦୀରିତା ।।୨୫।।

ତନ୍ୱୀ, ରୂପବତୀ ଶ୍ୟାମା (ଷୋଡ଼ଶ ବର୍ଷିକା), ପୀନୋନ୍ନତ ପୟୋଧରା, ପ୍ରଗଲ୍‌ଭା, ରସିକା, କମନୀୟା, ଶିକ୍ଷାଗ୍ରହଣ ଓ ମୋକ୍ଷରେ ନିପୁଣା, ବିଶାଳ ଲୋଚନା. ଗୀତ, ବାଦ୍ୟ ଓ ତାଳର ଅନୁବର୍ତ୍ତିନୀ, ବହୁମୂଲ୍ୟ ଚମତ୍କାର ଭୂଷଣ ପରିହିତା, ପ୍ରସନ୍ନମୁଖୀ; ଏ ସମସ୍ତ ଗୁଣଥିବା ନାୟିକାକୁ ନର୍ତ୍ତକୀ ବୋଲି କୁହାଯାଏ ।

## ବର୍ଜନୀୟପାତ୍ରାଣି

ପୁଷ୍ପାକ୍ଷୀ କେଶହୀନା ଚ ସ୍ଥୂଳୋଷ୍ଠି ଲମ୍ବିତସ୍ତନୀ ।
ଅତିସ୍ଥୂଳାପ୍ୟତିକୃଶା ଅତ୍ୟୁଚ୍ଚାପ୍ୟତିବାମନା ।।୨୬।।
କୁବ୍‌ଜା ଚ ସ୍ୱରହୀନା ଚ ଦଶୈତା ନାଟ୍ୟ ବର୍ଜ୍ଜିତାଃ ।

ପୁଷ୍ପାକ୍ଷୀ ( ଚକ୍ଷୁର ଡୋଳାରେ ଫୁଲଭଳି ଧଳା ଚିହ୍ନଥିବା ନାୟିକା ) କେଶହୀନା, ସ୍ଥୂଳୋଷ୍ଠି (ମୋଟା ଓଠ ଯାହାର) ଲମ୍ବିତସ୍ତନୀ (ପତିତସ୍ତନୀ) ଅତ୍ୟନ୍ତ ମୋଟା ବା ଅତ୍ୟନ୍ତ ପତଳା ଅତିଉଚ୍ଚ ବା ଅତି ଗେଡ଼ା, କୁଜା ଏବଂ ସ୍ୱରହୀନା ଏହି ଦଶ-ପ୍ରକାର ନାୟିକାଙ୍କୁ ନାଟ୍ୟରେ ବର୍ଜ୍ଜନ କରାଯାଏ ।

## ପାତ୍ରସ୍ୟ ପ୍ରାଣାଃ

ଜବଃସ୍ଥିରତ୍ୱଂ ରେଖା ଚ ଭ୍ରମରୀ ଦୃଷ୍ଟିରଶ୍ରମଃ ।।୨୭।।
ମେଧା ଶ୍ରଦ୍ଧା ବଚୋ ଗୀତଂ ପାତ୍ରପ୍ରାଣା ଦଶ ସ୍ମୃତାଃ ।
ଏବଂବିଧେନ ପାତ୍ରେଣ ନୃତ୍ୟଂ କାର୍ଯଂ ବିଧାନତଃ ।।୨୮।।

ଜବ (ତତ୍ପରତା) ସ୍ଥିରତା, ରେଖା (ଅବୟବ ସଙ୍ଗତି) ଭ୍ରମରୀ,ଦୃଷ୍ଟି ଅଶ୍ରମ ( ଅଳ୍ପପରିଶ୍ରମରେ କ୍ଳାନ୍ତବୋଧ କରିବା)

ମେଧା, ଶ୍ରଦ୍ଧା, ବଚନ ଓ ଗୀତ; ଏହି ଦଶଟିକୁ ପାତ୍ରର ପ୍ରାଣ ବୋଲାଯାଏ । ଏହି ଗୁଣବିଶିଷ୍ଟ ପାତ୍ରଦ୍ୱାରା ବିଧାନପୂର୍ବକ ନୃତ୍ୟ ହେବା ଆବଶ୍ୟକ ।

## କିଙ୍କିଣୀଲକ୍ଷଣମ୍

ସୁସ୍ୱରାଶ୍ଚ ସୁରୂପାଶ୍ଚ ସୂକ୍ଷ୍ମା ନକ୍ଷତ୍ରଦେବତାଃ ।
କିଙ୍କିଣ୍ୟଃ କାଂସ୍ୟରଚିତା ଏକୈକାଙ୍ଗୁଳକାନ୍ତରମ୍ ॥୨୯॥
ବଧ୍ନୀୟାନ୍ନୀଳସୂତ୍ରେଣ ଗ୍ରନ୍ଥିଭିଶ୍ଚ ଦୃଢ଼ଂ ପୁନଃ ।
ଶତଦ୍ୱୟଂ ଶତଂବାପି ପାଦୟୋର୍ନାଟ୍ୟକାରିଣୀ ॥୩୦॥

ସୁସ୍ୱର, ସୁରୂପା ଓ ସୂକ୍ଷ୍ମା ନକ୍ଷତ୍ର ଦେବତା ଯୁକ୍ତା(କିଙ୍କିଣୀର ଅଧିଷ୍ଠାତ୍ରୀ ଦେବତା ନକ୍ଷତ୍ରସମୂହ) କିଙ୍କିଣୀ କଂସାରେ ତିଆରି ହୋଇ ଏକ ଏକ ଆଙ୍ଗୁଳ ଅନ୍ତରରେ ନୀଳସୂତ୍ରଦ୍ୱାରା ଦୃଢଗ୍ରନ୍ଥି ସହ ଗ୍ରଥିତ ଦୁଇଶତ ବା ଏକଶତ, ନର୍ତ୍ତକୀ ଉଭୟ ପାଦରେ ବାନ୍ଧିବା ଆବଶ୍ୟକ ।

## ପ୍ରାର୍ଥନାଦ୍ୱକମ୍

ବିଘ୍ନେଶଂ ମୁରଜାଧିପଂ ଚ ଗଗନଂସ୍ତୁତ୍ୱା ମହୀଂ ପ୍ରାର୍ଥୟେତ୍
ତତ୍ତଦ୍ବାଦ୍ୟକଦମ୍ବକସ୍ୟ ବିଧିନା ପୂଜାବିଧାମାନୟେତ୍ ।
ଆଳପ୍ୟାତ୍ତମନୋହରାନ୍ ବହୁବିଧାନ୍ ସମ୍ପାଦ୍ୟ ଭୂୟସ୍ତଥା
ଗୁର୍ବାଜ୍ଞାମବଲମ୍ବ୍ୟ ପାତ୍ରମୁଚିତଂ ଶୃଙ୍ଗାରମେବାରଭେତ୍ ॥୩୧॥

ପ୍ରଥମତଃ ମୁରଜାଧିପତି ଗଣେଶ ଓ ଆକାଶକୁ ସ୍ତୁତିକରି ପୃଥିବୀକୁ ପ୍ରାର୍ଥନା କରିବ ଏବଂ ସେହି ବାଦ୍ୟସମୂହର ବିଧିପୂର୍ବକ ପୂଜାକରି ନାନାପ୍ରକାର ମନୋହର ଆଳାପ (ସ୍ୱରଗାନ) କରି, ପୁଣି ଗୁରୁଙ୍କର ଆଜ୍ଞାକୁ ଅବଲମ୍ବନ କରି ଉଚିତ ପାତ୍ରଦ୍ୱାରା ଶୃଙ୍ଗାର ଆରମ୍ଭ କରିବ ।

## ରଙ୍ଗାଧିଦେବତାସ୍ତୁତି

ଭରତକୁଳଭାଗ୍ୟକଳିକେ ଭାବରସାନନ୍ଦ ପରିଣତାକାରେ ।
ଜଗଦେକମୋହନକଳେ ଜୟ ଜୟ ରଙ୍ଗାଧିଦେବତେ ଦେବୀ ॥୩୨॥

ନଟକୁଳର ଭଗ କଳକା ସ୍ୱରୂପା, ଭାବ ଓ ରସକୁ ଆନନ୍ଦରେ ପରିଣତ କରୁଥିବା, ସଂସାରକୁ ମୋହନ କରିବା କଳା ଯାହାର, ହେ ରଙ୍ଗର ଅଧିଷ୍ଠାତ୍ରୀ ଦେବୀ ! ତୁମର ଜୟ ହେଉ ।

## ପୁଷ୍ପାଞ୍ଜଳିଃ

ବିଘ୍ନାନାଂ ନାଶନଂ କର୍ତ୍ତୁଂ ଭୂତାନାଂ ରକ୍ଷଣାୟଚ ।
ଦେବାନାଂ ତୁଷ୍ଟୟେ ଚାପି ପ୍ରେକ୍ଷକାଣାଂ ବିଭୂତୟେ ॥୩୩॥
ଶ୍ରେୟସେ ନାୟକାସ୍ୟାତ୍ର ପାତ୍ର ସଂରକ୍ଷଣାୟ ଚ ।
ଆଚାର୍ଯ୍ୟଶିକ୍ଷାସିଦ୍ଧ୍ୟର୍ଥଂ ପୁଷ୍ପାଞ୍ଜଳିମଥାରଭେତ୍ ॥୩୪॥

ବିଘ୍ନସମୂହର ନାଶ କରିବା ପାଇଁ, ପ୍ରାଣୀମାନଙ୍କର ରକ୍ଷା କରିବା ପାଇଁ, ଦେବତାଙ୍କୁ ତୁଷ୍ଟ କରିବା ପାଇଁ ଏବଂ ଦର୍ଶକମାନଙ୍କର ଉନ୍ନତିପାଇଁ; ନାୟକର ମଙ୍ଗଳ ଓ ଅନ୍ୟାନ୍ୟ ପାତ୍ରମାନଙ୍କର ରକ୍ଷା ପାଇଁ ତଥା ଆଚାର୍ଯ୍ୟ ଯାହା ଶିକ୍ଷା ଦେଇଛନ୍ତି ତାର ସିଦ୍ଧି ନିମିତ୍ତ ପୁଷ୍ପାଞ୍ଜଳି ଆରମ୍ଭ କରିବା ଉଚିତ୍ ।

## ନାଟ୍ୟକ୍ରମଃ

ଏବଂ କୃତ୍ୱା ପୂର୍ବରଙ୍ଗମ ନୃତ୍ୟଂ କାର୍ଯ୍ୟଂ ତତଃ ପରମ୍ ।
ନୃତ୍ୟଂ ଗୀତାଭିନୟୁନଂ ଭାବତାଳଯୁତଂ ଭବେତ୍ ॥୩୫॥
ଆସ୍ୟେନାଲମ୍ବୟେଦ୍ ଗୀତଂ ହସ୍ତେନାର୍ଥଂ ପ୍ରଦର୍ଶୟେତ୍ ।
ଚକ୍ଷୁର୍ଭ୍ୟାଂ ଦର୍ଶୟେତ୍ ଭାବଂ ପାଦାଭ୍ୟାଂ ତାଳମାଚରେତ୍ ॥୩୬॥
ଯତୋ ହସ୍ତସ୍ତତୋ ଦୃଷ୍ଟିର୍ଯତୋ ଦୃଷ୍ଟିସ୍ତତୋ ମନଃ
ଯତୋ ମନସ୍ତତୋ ଭାବ ଯତୋ ଭାବସ୍ତତୋ ରସଃ ॥୩୭॥

ଏହାପରେ ପୂର୍ବରଙ୍ଗ ବିଧାନ କରି ତତ୍ପରେ ନୃତ୍ୟ କରିବା ଆବଶ୍ୟକ । ନୃତ୍ୟ, ଗୀତ ଓ ଅଭିନୟ—ଭାବ ଓ ତାଳଯୁକ୍ତ ହେବା ଉଚିତ୍ । ମୁଖରେ ଗୀତ ଗାଇବ, ହସ୍ତରେ ଅର୍ଥ ପ୍ରକାଶ କରିବ, ଉଭୟ ଚକ୍ଷୁଦ୍ୱାରା ଭାବ ପ୍ରଦର୍ଶନ କରିବ ଓ ପାଦଦ୍ୱାରା ତାଳ ଆଚରଣ କରିବ । ଯେଉଁଠାରେ ହସ୍ତ, ସେହିଠାରେ ଦୃଷ୍ଟି; ଯେଉଁଠାରେ ଦୃଷ୍ଟି, ସେହିଠାରେ ମନ; ଯେଉଁଠାରେ ମନ, ସେହିଠାରେ ଭାବ ଏବଂ ଯେଉଁଠାରେ ଭାବ, ସେହିଠାରେ ରସ ।

## ଅଭିନୟଃ

ତତ୍ର ଚାଭିନୟସ୍ୟୈବ ପ୍ରାଧାନ୍ୟମିତି କଥ୍ୟତେ ।
ଆଙ୍ଗିକୋ ବାଚକସ୍ତଦ୍ବଦାହାର୍ଯ୍ୟଃ ସାତ୍ତ୍ୱିକୋଽପରଃ ।।୩୮।।
ଚତୁର୍ଧାଭିନୟ୍—

ତନ୍ମଧ୍ୟରେ (ନୃତ୍ୟରେ) ଅଭିନୟର ପ୍ରଧାନ୍ୟ ଥିବା କୁହାଯାଇଅଛି । ଆଙ୍ଗିକ, ବାଚକ, ଆହାର୍ଯ୍ୟ ଓ ସାତ୍ତ୍ୱିକ ଭେଦରେ ଅଭିନୟ ଚାରି ପ୍ରକାର ।

## ଆଙ୍ଗିକାଭିନୟଃ

—ତତ୍ର ଆଙ୍ଗିକୋଽଙ୍ଗୈର୍ନିଦର୍ଶିତଃ ।

ତନ୍ମଧ୍ୟରୁ ଆଙ୍ଗିକ ଅଙ୍ଗସମୂହଦ୍ୱାରା ନିଦର୍ଶିତ ହୋଇଥାଏ ।

## ବାଚକାଭିନୟଃ

ବାଗ୍ଭିର୍ବିରଚିତଃ କାବ୍ୟ ନାଟକାଦି ତୁ ବାଚକଃ ।।୩୯।।

ବଚନ ବା ବାକ୍ୟଦ୍ୱାରା ରଚିତ କାବ୍ୟ ନାଟକାଦି (ଅଭିନୟ) ବାଚକ ବୋଲାଏ ।

## ଆହାର୍ଯ୍ୟାଭିନୟଃ

ଆହାର୍ଯ୍ୟୋ ହାରକେୟୂରବେଷାଦିଭିରଲଂକୃତଃ ।

ହାର, କେୟୂର ଓ ବେଶ ପ୍ରଭୃତି ଦ୍ୱାରା ଅଳଙ୍କରଣ ବା ସାଜସଜ୍ଜା ଆହାର୍ଯ୍ୟ ଅଭିନୟ ।

## ସାତ୍ତ୍ୱିକାଭିନୟଃ

ସାତ୍ତ୍ୱିକଃ ସାତ୍ତ୍ୱିକୈର୍ଭାବୈର୍ଭାବଜ୍ଞେନ ବିଭାବିତଃ ।।୪୦।।
ସ୍ତମ୍ଭଃ ସ୍ୱେଦାମ୍ବୁ ରୋମାଞ୍ଚଃ ସ୍ୱରଭଙ୍ଗୋଽଥ ବେପଥୁଃ ।
ବୈବର୍ଣ୍ୟମଶ୍ରୁ ପ୍ରଳୟ ଇତ୍ୟଷ୍ଟୌ ସାତ୍ତ୍ୱିକାଃ ସ୍ମୃତାଃ ।।୪୧।।

ସାତ୍ତ୍ୱିକ (ଅଭିନୟ) ସାତ୍ତ୍ୱିକଭାବ ସାହାଯ୍ୟରେ ଭାବଜ୍ଞଦ୍ୱାରା ବିଭାବିତ ହୁଏ । ସ୍ତମ୍ଭ, ସ୍ୱେଦାମ୍ବୁ (ଘର୍ମ) ରୋମାଞ୍ଚ, ସ୍ୱରଭଙ୍ଗ

ବେପଥୁ (କମ୍ପନ,) ମୁଖବୈବର୍ଣ୍ଣ୍ୟ, ଅଶ୍ରୁ ଓ ପ୍ରଳୟ (ମୂର୍ଚ୍ଛା) ଏହି ଆଠ ସାତ୍ତ୍ୱିକଭାବ ବୋଲି ପରିଚିତ ।

## ଆଙ୍ଗିକାଭିନୟ ସାଧନାନି

– ତତ୍ରାଙ୍ଗିକୋଽଙ୍ଗପ୍ରତ୍ୟଙ୍ଗୋପାଙ୍ଗୈସ୍ତ୍ରେଧା ପ୍ରକାଶିତଃ ।

ଏହା ମଧ୍ୟରୁ ଆଙ୍ଗିକ, ଅଙ୍ଗ, ପ୍ରତ୍ୟଙ୍ଗ ଓ ଉପାଙ୍ଗ ଏହି ତିନି ଭେଦରେ ପ୍ରକାଶିତ ହୁଏ ।

## ଅଙ୍ଗାନି

ଅଙ୍ଗାନ୍ୟତ୍ର ଶିରୋ ହସ୍ତୌ ବକ୍ଷଃ ପାର୍ଶ୍ୱୌ କଟୀତଟୌ ।।୪୨।।
ପାଦାବିତି ଷଡୁକ୍ତାନି ଗ୍ରୀବାମପ୍ୟପରେ ଜଗୁଃ ।

ଏମଧ୍ୟରୁ ଶିର, ହସ୍ତଦ୍ୱୟ, ବକ୍ଷ, ପାର୍ଶ୍ୱଦ୍ୱୟ, କଟୀତଟ ଓ ପଦଦ୍ୱୟ, ଏହି ଛଅଟି ଅଙ୍ଗବୋଲି କଥିତ ହୁଏ । ଅନ୍ୟମାନେ ଗ୍ରୀବାକୁ ମଧ୍ୟ ଅଙ୍ଗ ବୋଲି କହନ୍ତି ।

## ପ୍ରତ୍ୟଙ୍ଗାନି

ପ୍ରତ୍ୟଙ୍ଗାନ୍ୟଥ ଚ ସ୍କନ୍ଧୌ ବାହୂ ପୃଷ୍ଠଂତଥୋଦରମ୍ ।।୪୩।।
ଊରୁ ଜଂଘେ ଷଡ଼ିତ୍ୟାହୁରପରେ ମଣିବନ୍ଧକୌ ।
ଜାନୁନୀ କୂର୍ପରାବେତତ୍ ତ୍ରୟମପ୍ୟଧିକଂ ଜଗୁଃ ।।୪୪।।
ଗ୍ରୀବାସ୍ୟାଦପ୍ୟ—

ଏହାପରେ ସ୍କନ୍ଧଦ୍ୱୟ, ବାହୁ, ପୃଷ୍ଠ, ଉଦର ଊରୁ; ଜଂଘ— ଏହି ଛଅକୁ ପ୍ରତ୍ୟଙ୍ଗ ବୋଲାଯାଏ । ଅନ୍ୟମାନେ ମଣିବନ୍ଧ, ଜାନୁ ଓ କହୁଣୀ ଏହି ତିନକୁ ଏବଂ ଗ୍ରୀବାକୁ ମଧ୍ୟ ପ୍ରତ୍ୟଙ୍ଗ ବୋଲି କହନ୍ତି ।

## ଉପାଙ୍ଗାନି

—ଉପାଙ୍ଗାନ୍ତୁ ସ୍କନ୍ଧ ଏବ ଜଗୁର୍ବୁଧାଃ ।
ଦୃଷ୍ଟି ଭ୍ରୂପୁଟତାରାଶ୍ଚ କପୋଲୌ ନାସିକା ହନୂ ।।୪୫।।
ଅଧରୋ ଦଶନା ଜିହ୍ୱା ଚିବୁକଂ ବଦନଂ ତଥା ।
ଉପାଙ୍ଗାନି ଦ୍ୱାଦଶୈବ ଶିରସ୍ୟଙ୍ଗାନ୍ତରେଷୁଚ ।।୪୬।।

ପାର୍ଷ୍ଣିଗୁଲ୍‌ଫୌ ତଥାଙ୍ଗୁଲ୍ୟଃ କରଯୋଃ ପାଦଯୋସ୍ତଲେ ।
ଏତାନି ପୂର୍ବଶାସ୍ତ୍ରାନୁସାରେଣୋକ୍ତାନି ବୈ ମୟା ॥୪୭॥
ନୃତ୍ୟମାତ୍ରୋପଯୋଗୀନି କଥ୍ୟନ୍ତେ ଲକ୍ଷଣୈଃ କ୍ରମାତ୍ ।
ଅଙ୍ଗାନାଂ ଚଲନାଦେବ ପ୍ରତ୍ୟଙ୍ଗୋପାଙ୍ଗୟୋରପି ॥୪୮॥
ଚଲନଂ ପ୍ରଭବେତ୍ତସ୍ମାତ୍ ସର୍ବେଷାଂ ନାତ୍ର ଲକ୍ଷଣମ୍ ।

ପଣ୍ଡିତଗଣ ସ୍କନ୍ଧକୁ ଉପାଙ୍ଗ ବୋଲି କହିଥାଆନ୍ତି । ଚକ୍ଷୁ, ଭ୍ରୂପୃଷ୍ଠ, ତାରା (ଆଖିଡ଼ୋଳା), କପୋଳ (ଗଣ୍ଡର ନିମ୍ନଦେଶ) ନାସିକା, ହନୁ (ଗଣ୍ଡଉର୍ଦ୍ଧ୍ୱଦେଶସ୍ଥିତ ଅସ୍ଥି); ଅଧର, ଦନ୍ତ, ଜିହ୍ୱା ଚିବୁକ ଓ ମୁଖ—ଏହି ୧୨ଟି ଶିର ଅଙ୍ଗସ୍ଥିତ ଉପାଙ୍ଗ । ପାର୍ଷ୍ଣି (ଗୋଇଠି) ଗୁଲ୍‌ଫ (ଗୋଡ଼ଗେଣ୍ଠା) ହସ୍ତପଦର ଅଙ୍ଗୁଳି ତଥା ହସ୍ତପାଦର ତଳକୁ ମଧ୍ୟ ଉପାଙ୍ଗ ବୋଲିଯାଏ । ଏହା ମୁଁ ପୂର୍ବ-ଶାସ୍ତ୍ରାନୁଯାୟୀ କହୁଅଛି । ଏଗୁଡ଼ିକ ମଧ୍ୟରେ ଯାହା ନୃତ୍ୟୋପ-ଯୋଗୀ ତାର ବର୍ଣ୍ଣନା ଲକ୍ଷଣ କ୍ରମରେ କହୁଅଛି । ଅଙ୍ଗର ଚାଳନାରେ ପ୍ରତ୍ୟଙ୍ଗ ଓ ଉପାଙ୍ଗର ମଧ୍ୟ ଚାଳନା ହୁଏ । ସେହି ଚାଳନା କାରଣରୁ ସବୁଗୁଡ଼ିକର ଲକ୍ଷଣ ଏଠାରେ ଦିଆଯାଉନାହିଁ ।

## ଶିରୋଭେଦାଃ

ସମମୁଦ୍‌ବାହିତମଧୋମୁଖମାଲୋଳିତଂ ଧୂତମ୍ ॥୪୯॥
କମ୍ପିତଂ ଚ ପରାବୃତ୍ତମୁତ୍କ୍ଷିପ୍ତଂ ପରିବାହିତମ୍ ।
ନବଧା କଥିତଂ ଶୀର୍ଷଂ ନାଟ୍ୟଶାସ୍ତ୍ରବିଶାରଦୈଃ ॥୫୦॥

ସମ, ଉଦ୍‌ବାହିତ, ଅଧୋମୁଖ, ଆଲୋଳିତ, ଧୂତ, କମ୍ପିତ, ପରାବୃତ୍ତ, ଉତ୍କ୍ଷିପ୍ତ ଓ ପରିବାହିତ— ଏହି ନଅପ୍ରକାର ଶିରଭଂଗୀ ନାଟ୍ୟବିଶାରଦମାନଙ୍କଦ୍ୱାରା କୁହାଯାଇଅଛି ।

### ସମଶିରଃ

ନିଶ୍ଚଳଂ ସମମାଖ୍ୟାତଂ ଯନ୍ନତ୍ୟୁନ୍ନତବର୍ଜିତମ୍ ।

ଉନ୍ନତ ବା ଅବନତ ନ ହୋଇଥିବା ନିଶ୍ଚଳ ଶିରକୁ ସମଶିର ବୋଲିଯାଏ ।

## ବନିଯୋଗଃ

ନୃତ୍ୟାରମ୍ଭେ ଜପାଦୌ ଚ ଗର୍ବେ ପ୍ରଣୟକୋପୟୋଃ ।।୫୧।।
ସ୍ତମ୍ଭନେ ନଷ୍ଟୀଯୁଦ୍ଧେ ଚ ସମଶୀର୍ଷମୁଦାହୃତମ୍ ।

ନୃତ୍ୟାରମ୍ଭ, ଜପ, ପ୍ରଣୟକୋପ, ସ୍ତମ୍ଭନ ଓ ନଷ୍ଟଦ୍ୱିପ୍ସ ଭାବ ପ୍ରଦର୍ଶନରେ ସମଶିରର ବନିଯୋଗ ହୁଏ ।

## ଉଦ୍‌ବାହିତଶିରଃ

ଉଦ୍‌ବାହିତଶିରୋ ଜ୍ଞେୟମୂର୍ଦ୍ଧ୍ୱଭାଗୋନ୍ନତାନନମ୍ ।। ୫୨।।

ଉର୍ଦ୍ଧଭାଗକୁ ଉନ୍ନତ ଶିରକୁ ଉଦ୍‌ବାହିତଶିର ବୋଲାଯାଏ ।

## ବନିଯୋଗଃ

ଧ୍ୱଜେ ଚନ୍ଦ୍ରେ ଚ ଗଗନେ ପର୍ବତେ ବ୍ୟୋମଗାମିଷୁ ।
ତୁଂଗବସ୍ତୁନ ସଂଯୋଜ୍ୟମୁଦ୍‌ବାହିତ ଶିରୋ ବୁଧୈଃ ।। ୫୩ ।।

ଧ୍ୱଜ (ପତାକା), ଚନ୍ଦ୍ର, ଆକାଶ, ପର୍ବତ, ଆକାଶଗାମୀ (ବସ୍ତୁ) ଓ ତୁଂଗବସ୍ତୁ (ଦର୍ଶନ)ରେ ବଜ୍ଞବ୍ୟକ୍ତିଗଣ ଉଦ୍‌ବାହିତଶିର ପ୍ରୟୋଗ କରନ୍ତି ।

## ଅଧୋମୁଖଶିରଃ

ଅଧସ୍ତାନ୍ନମିତଂ ବକ୍ତ୍ରମଧୋମୁଖମିତୀରିତମ୍ ।

ନିମ୍ନ ଦିଗକୁ ନମିତ ମୁଖକୁ ଅଧୋମୁଖ ଶିର ବୋଲାଯାଏ ।

## ବନିଯୋଗଃ

ଲଜ୍ଜାଖେଦପ୍ରଣାମେଷୁ ଦୁଶ୍ଚିନ୍ତାମୂର୍ଚ୍ଛୟୋସ୍ତଥା ।୫୪ ।
ଅଧଃସ୍ଥିତାର୍ଥନିର୍ଦ୍ଦେଶେ ଯୁଜ୍ୟତେଽମ୍ବୁନି ମଜ୍ଜନେ ।

ଲଜ୍ଜା, ଖେଦ, ପ୍ରଣାମ, ଦୁଶ୍ଚିନ୍ତା, ମୂର୍ଚ୍ଛା, ନିମ୍ନରେ ଥିବା ଅର୍ଥ ନିର୍ଦ୍ଦେଶରେ ଓ ଜଳରେ ବୁଡ଼ିବା ଅର୍ଥରେ ଏହାର ପ୍ରୟୋଗ ହୁଏ ।

## ଆଲୋଳିତଶିରଃ

ମଣ୍ଡଳାକାରମୁଦ୍‌ଭ୍ରାନ୍ତମାଲୋଳିତଂ ଶିରୋ ଭବେତ୍‌ ॥ ୫୫ ॥
ମଣ୍ଡଳାକାରରେ ଶିର ବୁଲିଲେ ଆଲୋଳିତ ଶିର ହୁଏ ।

## ବିନିଯୋଗଃ

ନିଦ୍ରୋଦ୍‌ବେଗଗ୍ରହାବେଶମଦମୂର୍ଚ୍ଛାସୁ ସମ୍ମତମ୍‌ ।
ଭ୍ରମଣେ ବିକଟୋଦ୍ଧାମହାସ୍ୟେ ଚାଲୋଳିତଂ ଶିରଃ ॥ ୫୬ ॥

ନିଦ୍ରା, ଉଦ୍‌ବେଗ, ଗ୍ରହାବେଶ (ଭୂତଲାଗିବା), ମଦ, ମୂର୍ଚ୍ଛା, ଭ୍ରମଣ, ବିକଟ ଓ ଉଦ୍ଧାମ ହାସ୍ୟରେ ଆଲୋଳିତ ଶିରର ପ୍ରୟୋଗ ହୁଏ ।

## ଧୂତଶିରଃ

ବାମଦକ୍ଷିଣଭାଗେଷୁ ଚଳିତଂ ତଦ୍‌ଧୂତଂ ଶିରଃ ।
ବାମ ଓ ଦକ୍ଷିଣ ଭାଗକୁ ଚଳିତ ଶିରକୁ ଧୂତ ଶିର ବୋଲାଯାଏ ।

## ବିନିଯୋଗଃ

ନାସ୍ତୀତି ବଚନେ ଭୂୟଃ ପାର୍ଶ୍ୱଦେଶାବଲୋକନେ ॥୫୭॥
ଜନାଶ୍ୱାସେ ବିସ୍ମୟେ ଚ ବିଷାଦେଽପ୍ୟନୀପ୍‌ସିତେ ତଥା ।
ଶୀତାର୍ତ୍ତେ ଜ୍ୱରିତେ ଭୀତେ ସଦ୍ୟଃପିତାସବେ ତଥା ॥୫୮॥
ଯୁଦ୍ଧେ ଯତ୍ନ ନିଷେଧାଦାବମର୍ଷେ ସ୍ୱାଙ୍ଗବୀକ୍ଷଣେ ।
ପାର୍ଶ୍ୱାହ୍ୱାନେ ଚ ତସ୍ୟୋକ୍ତଃ ପ୍ରୟୋଗୋ ଭରତାଦିଭିଃ ॥୫୯॥

ନାହିଁକରିବା, ବାରମ୍ବାର ପାର୍ଶ୍ୱଦେଶକୁ ଅନାଇବା, ଲୋକଙ୍କୁ ଆଶ୍ୱାସନା ଦେବା, ବିସ୍ମୟ, ବିଷାଦ, ଅବାଞ୍ଛିତ, ଶୀତରେ ଥରିବା, ଜ୍ୱର, ଭୟଭୀତ, ସଦ୍ୟ ମଦ୍ୟପାନ କରିଥିବା, ଯୁଦ୍ଧ୍ୱ (ଚେଷ୍ଟା) ନିଷେଧ କରିବା, ଅମର୍ଷ (କ୍ରୋଧ), ନିଜ ଅଙ୍ଗକୁ ଦେଖିବା, ପାର୍ଶ୍ୱରୁ ଆହ୍ୱାନ କରିବାରେ ଭରତାଦି (ନାଟ୍ୟଶାସ୍ତ୍ରଜ୍ଞ) ଏହାର ପ୍ରୟୋଗ ହୁଏ ବୋଲି କହିଛନ୍ତି ।

## କର୍ମିତଶିରଃ

ଊର୍ଦ୍ଧ୍ୱାଧୋଭାଗ ଚଳିତଂ ତଚ୍ଛିରଃ କର୍ମିତଂ ଭବେତ୍ ।
ଊର୍ଦ୍ଧ୍ୱ ଓ ନିମ୍ନକୁ ଚଳିତ ଶିର କର୍ମିତଶିର ହୁଏ ।

## ବିନିଯୋଗଃ

ରୋଷେ ଭିଷୟୁଭ ବଚନେ ପ୍ରଶ୍ନ ସଂଖ୍ୟାପହୂତଯୋଃ ।।୬୦।।
ଆବାହନେ ତର୍ଜନେ ଚ କର୍ମିତଂ ବିନିଯୁଜ୍ୟତେ ।

ରୋଷ, 'ରହ' ବୋଲି କହିବା, ପ୍ରଶ୍ନ, ସଂଖ୍ୟାଗଣନା, ଆବାହନ ଓ ତାଡନାରେ କର୍ମିତଶିରର ବିନିଯୋଗ ହୁଏ ।

## ପରିବୃତ୍ତଶିରଃ

ପରାଙ୍ମୁଖୀକୃତଂ ଶୀର୍ଷଂ ପରିବୃତ୍ତମିତୀରିତମ୍ ।।୬୧।।

ପଶ୍ଚାତ୍ (ପାର୍ଶ୍ୱ) ମୁଖୀ ଶୀର୍ଷକୁ ପରିବୃତ୍ତ ଶିର ବୋଲିଯାଏ ।

## ବିନିଯୋଗଃ

ତତ୍ କାର୍ଯ୍ୟଂ କୋପଲଜ୍ଜାଦିକୃତେ ବକ୍ତ୍ରାପସାରଣେ ।
ଅନାଦରେ କଚେ ଭୂଣ୍ୟାଂ ପରିବୃତ୍ତଶିରୋଭବେତ୍ ।।୬୨।।

ସେହି କାର୍ଯ୍ୟ, କୋପ ଓ ଲଜ୍ଜାଜନିତ ମୁହଁ ବୁଲାଇବା, ଅନାଦର, କେଶ (ବାନ୍ଧିବା ଇତ୍ୟାଦି), ଭ୍ରୂଣୀର ଅର୍ଥରେ ପରିବୃତ୍ତ ଶିରର ପ୍ରୟୋଗ କର୍ତ୍ତବ୍ୟ ।

## ଉତ୍‌କ୍ଷିପ୍ତଶିରଃ

ପାର୍ଶ୍ୱୋର୍ଦ୍ଧ୍ୱଭାଗଚଳିତମୁତ୍‌କ୍ଷିପ୍ତଂ କଥ୍ୟତେ ଶିରଃ ।

ପାର୍ଶ୍ୱ ଓ ଊର୍ଦ୍ଧ୍ୱଭାଗରେ ଚଳିତ ଶିର ଉତ୍‌କ୍ଷିପ୍ତଶିର ବୋଲି କଥିତ ହୁଏ ।

## ବିନିଯୋଗଃ

ଗୃହାଣାଗଚ୍ଛେତ୍ୟାଦ୍ୟର୍ଥସୂଚନେ ପରିପୋଷଣେ ।।୬୩।।
ଅଙ୍ଗୀକାରେ ପ୍ରୟୋକ୍ତବ୍ୟମୁତ୍‌କ୍ଷିପ୍ତଂ ନାମ ଶୀର୍ଷକମ୍ ।

'ଗ୍ରହଣକର', 'ଆସ' ଇତ୍ୟାଦି ଅର୍ଥରେ, ପରିପୋଷଣ ଓ ସ୍ୱୀକାରରେ ଉତ୍‌କ୍ଷିପ୍ତଶିର ପ୍ରୟୋଗ କରିବା ଉଚିତ୍ ।

## ପରିବାହିତଶିରଃ

ପାର୍ଶ୍ୱ୍ୟୋଶ୍ଚାମରମିବଶ୍ରତଂ ଚେତ୍ ପରିବାହିତମ୍ ॥୭୪॥

ଚାମରଭଳି ଉଭୟ ପାର୍ଶ୍ୱରେ ଶିର ହଲିଲେ ତାହା ପରିବାହିତ ଶିର ହୁଏ ।

## ବିନିଯୋଗଃ

ମୋହେ ଚ ବିରହେ ସ୍ତୋତ୍ରେ ସନ୍ତୋଷେଚ୍ୟନୁମୋଦନେ ।
ବିଗୃରେ ଚ ପ୍ରୟୋକ୍ତବ୍ୟଂ ପରିବାହିତଶୀର୍ଷକମ୍ ॥୭୫॥

ମୋହ, ବିରହ ସ୍ତୋତ୍ରପାଠ, ସନ୍ତୋଷ, ଅନୁମୋଦନ ଓ ବିଗୃର ଆଦିରେ ପରିବାହିତ ଶିର ପ୍ରୟୋଗ ହେବା ଉଚିତ ।

## ଦୃଷ୍ଟିଭେଦାଃ

ସମମାଲୋକିତଂ ସାଚୀ ପ୍ରଲୋକିତନିମୀଳିତେ ।
ଉଲ୍ଲୋକିତାନୁବୃତ୍ତେ ଚ ତଥା ଚୈବାବଲୋକିତମ୍ ॥୭୬॥
ଇତ୍ୟଷ୍ଟୌ ଦୃଷ୍ଟିଭେଦାଃ ସ୍ୟୁଃ କୀର୍ତ୍ତିତାଃ ପୂର୍ବସୂରିଭିଃ ।

ସମ, ଆଲୋକିତ, ସାଚୀ, ପ୍ରଲୋକିତ, ନିମୀଳିତ, ଉଲ୍ଲୋକିତ, ଅନୁବୃତ୍ତ ଓ ଅବଲୋକିତ, ଏହି ଆଠପ୍ରକାର ଦୃଷ୍ଟିଭେଦ ପୂର୍ବ-ଜ୍ଞାନୀମାନଙ୍କଦ୍ୱାରା କୁହାଯାଇଅଛି ।

## ସମଦୃଷ୍ଟିଃ

ବୀକ୍ଷଣଂ ସୁରନାରୀବତ୍ ସାନନ୍ଦଂ ସମବୀକ୍ଷଣମ୍ ॥୭୭॥

ଦେବାଙ୍ଗନା ସଦୃଶ ଆନନ୍ଦ ସହକାରେ ସରଳ ଦୃଷ୍ଟିର ନାମ ସମଦୃଷ୍ଟି ।

## ବିନିଯୋଗଃ

ନାଟ୍ୟାରମ୍ଭେ ତୁଲାୟାଂଚ ପ୍ୟନ୍ୟଚିନ୍ତା ବିନିଶ୍ଚୟେ ।
ଆଶ୍ଚର୍ଯ୍ୟେ ଦେବତାରୂପେ ସମଦୃଷ୍ଟିରୁଦାହୃତା ॥୭୮॥

ନାଟ୍ୟ ଆରମ୍ଭରେ, ମାନଦଣ୍ଡ (ଓଜନ)ରେ, ଅନ୍ୟଜଣେ କଣ ଭାବୁଛି ତାହା ନିଶ୍ଚୟ କରିବାରେ, ଆଶ୍ଚର୍ଯ୍ୟ ଓ ଦେବତା ରୂପରେ ସମଦୃଷ୍ଟିର ପ୍ରୟୋଗ ହୁଏ ।

## ଆଲୋକିତଦୃଷ୍ଟିଃ

ଆଲୋକିତଂ ଭବେଦାଶୁଭ୍ରମଣଂ ସ୍ପଷ୍ଟବୀକ୍ଷଣମ୍ ।

ବସ୍ତୁ ଆରତ ଭାବରେ ଶୀଘ୍ର ବୁଲାଇ ଦର୍ଶନ କଲେ ଆଲୋକିତ ଦୃଷ୍ଟି ହୁଏ ।

## ବିନିଯୋଗଃ

କୁଲାମଚକ୍ରଭ୍ରମଣେ ସର୍ବବସ୍ତୁପ୍ରଦର୍ଶନେ ॥୬୯॥

ଯାଚ୍ଞାୟାଂ ଚ ପ୍ରୟୋକ୍ତବ୍ୟମାଲୋକିତ ନିରୀକ୍ଷଣମ୍ ।

କୁମ୍ଭାର ଚକ ବୁଲିବା, ସମସ୍ତବସ୍ତୁ ଦେଖାଇବା ଓ ଭିକ୍ଷା କରିବାରେ ଆଲୋକିତ ଦୃଷ୍ଟିର ପ୍ରୟୋଗ କର୍ତ୍ତବ୍ୟ ।

## ସାଚୀଦୃଷ୍ଟିଃ

ସ୍ୱସ୍ଥାନେ ତିର୍ଯ୍ୟଗାକାରମପାଙ୍ଗଚଳନଂ କ୍ରମାତ୍ ॥୭୦॥

ସାଚୀଦୃଷ୍ଟିରିତି ଜ୍ଞେୟା ନାଟ୍ୟଶାସ୍ତ୍ରବିଶାରଦୈଃ ।

ଏକସ୍ଥାନରେ ତିର୍ଯ୍ୟଗ୍‌ଭାବରେ (କଣେଇ) ଅପାଙ୍ଗ ଚାଳନକୁ ନାଟ୍ୟଶାସ୍ତ୍ରବିଶାରଦଗଣ ସାଚୀଦୃଷ୍ଟି କହିଛନ୍ତି ।

## ବିନିଯୋଗଃ

ଇଙ୍ଗିତେ ଶ୍ମଶ୍ରୁସଂସ୍ପର୍ଶେ ଶରଲକ୍ଷେ ଶୁକେ ସ୍ମୃତୌ ॥୭୧॥

ସୂଚନାୟାଂ ଚ କାର୍ଯ୍ୟାଣାଂ ନାଟ୍ୟେ ସାଚୀନିରୀକ୍ଷଣମ୍ ।

ନାଟ୍ୟରେ ଇଙ୍ଗିତ ଦେବା, ନିଶମୋଡ଼ିବା, ଶରଲକ୍ଷ୍ୟ, ଶୁକ-ପକ୍ଷୀ, ସ୍ମୃତି (ସ୍ମରଣ କରିବା) କାର୍ଯ୍ୟର ସୂଚନା ଜଣାଇବାରେ ସାଚୀଦୃଷ୍ଟି ପ୍ରଯୁଜ୍ୟ ।

## ପ୍ରଲୋକିତ ଦୃଷ୍ଟିଃ

ପ୍ରଲୋକିତଂ ପରିଜ୍ଞେୟଂ ଚଳନଂ ପାର୍ଶ୍ୱ ଭାଗୟୋଃ ॥୭୨॥

ଉଭୟ ପାର୍ଶ୍ୱକୁ ଦୃଷ୍ଟି ଚାଳନା କରିବା ପ୍ରଲୋକିତଦୃଷ୍ଟି ନାମରେ ପରିଚିତ ।

### ବିନିୟୋଗଃ

ଉଭୟୋଃ ପାର୍ଶ୍ୱୟୋର୍ବସ୍ତୁ ନିର୍ଦ୍ଦେଶେ ଚ ପ୍ରସଙ୍ଗତଃ ।
ଚଳନେ ବୁଦ୍ଧିଜାଡ୍ୟେ ଚ ପ୍ରଲୋକିତନିରୀକ୍ଷଣମ୍ ॥୭୩॥

ଉଭୟ ପାର୍ଶ୍ୱରେଥିବା ବସ୍ତୁ ଦର୍ଶାଇବାରେ, ଆଗ୍ରହ ପ୍ରଦର୍ଶନରେ ଚାଳନା କରିବାରେ ଓ ବୁଦ୍ଧିରଜଡ଼ତା ପ୍ରକାଶରେ ପ୍ରଲୋକିତ ନିରୀକ୍ଷଣର ପ୍ରୟୋଗ ହୁଏ ।

## ମୀଳିତଦୃଷ୍ଟିଃ

ଦୃଷ୍ଟେର୍ଦ୍ଧବିକାଶେନ ମୀଳିତା ଦୃଷ୍ଟିରୀରିତା ।

ଦୃଷ୍ଟିର ଅର୍ଦ୍ଧବିକାଶ (ଆଖି ଅଧା ଖୋଲା)ର ନାମ ମୀଳିତଦୃଷ୍ଟି

### ବିନିୟୋଗଃ

ଆଶୀବିଷେ ପରାବଶ୍ୟେ ଜପେ ଧ୍ୟାନେ ନମସ୍କୃତୌ ॥୭୪॥
ଉନ୍ମାଦେ ସୂକ୍ଷ୍ମଦୃଷ୍ଟୌ ଚ ମୀଳିତା ଦୃଷ୍ଟିରୀରିତା ।

ସର୍ପ, ଅନ୍ୟରବଶ ହେବା ଜପ, ଧ୍ୟାନ, ନମସ୍କାର, ଉନ୍ମାଦ ଓ ସୂକ୍ଷ୍ମଦୃଷ୍ଟିରେ ପ୍ରୟୋଗ ହୁଏ ବୋଲି କଥିତ ।

## ଉଲ୍ଲୋକିତ ଦୃଷ୍ଟିଃ

ଉଲ୍ଲୋକିତମିତି ଜ୍ଞେୟମୂର୍ଦ୍ଧ୍ୱଭାଗେ ବିଲୋକନମ୍ ॥୭୫॥

ଊର୍ଦ୍ଧ୍ୱଭାଗକୁ ଦର୍ଶନର ନାମ ଉଲ୍ଲୋକିତଦୃଷ୍ଟି ।

### ବିନିୟୋଗଃ

ଧ୍ୱଜାଗ୍ରେ ଗୋପୁରେ ଦେବମଣ୍ଡଳେ ପୂର୍ବଜନ୍ମନି ।
ଔନ୍ନତ୍ୟେ ଚନ୍ଦ୍ରିକାଦାବପ୍ୟୁଲ୍ଲୋକିତନିରୀକ୍ଷଣମ୍ ॥୭୬॥

ପତାକାର ଅଗ୍ରଭାଗ (ଦର୍ଶନ) ଗୋପୁର, ଦେବମଣ୍ଡଳ, ପୂର୍ବଜନ୍ମ, ଉଚ୍ଚତା ଓ ଚନ୍ଦ୍ରକିରଣ ପ୍ରଦର୍ଶନରେ ଉଲ୍ଲୋକିତ ନିରୀକ୍ଷଣ ପ୍ରଯୁଜ୍ୟ ।

## ଅନୁବୃତ୍ତ ଦୃଷ୍ଟିଃ

ଊର୍ଦ୍ଧ୍ୱାଧୋ ବୀକ୍ଷଣଂ ବେଗାଦନୁବୃତ୍ତମିତୀରିତମ୍ ।

ବେଗରେ (ଚଞ୍ଚଳରେ) ଊର୍ଦ୍ଧ୍ୱ ଓ ଅଧକୁ ନିରୀକ୍ଷଣ କଲେ ତାହା ଅନୁବୃତ୍ତଦୃଷ୍ଟି ହୁଏ ।

## ବିନିଯୋଗଃ

କୋପଦୃଷ୍ଟୌ ପ୍ରିୟାମନ୍ତ୍ରେ ଅନୁ ବୃତ୍ତ ନିରୀକ୍ଷଣମ୍ ।। ୭୭ ।।

କୋପଦୃଷ୍ଟି ଓ ପ୍ରିୟଜନକୁ ଆମନ୍ତ୍ରଣ କରିବାରେ ଅନୁବୃତ୍ତ ଦୃଷ୍ଟିର ବିନିଯୋଗ ହୁଏ ।

## ଅବଲୋକିତଦୃଷ୍ଟିଃ

ଅଧସ୍ତାଦ୍ଦର୍ଶନଂ ଯତ୍ତଦବଲୋକିତମୁଚ୍ୟତେ ।

ନିମ୍ନକୁ ନିରୀକ୍ଷଣ କରିବାକୁ ଅବଲୋକିତ ଦୃଷ୍ଟି ବୋଲାଯାଏ ।

## ବିନିଯୋଗଃ

ଛାୟାଲୋକେ ବିଚାରେ ଚ ଚର୍ଯାୟାଂ ପଠନକ୍ରମେ ।।୭୮।।
ସ୍ୱାଙ୍ଗାବଲୋକନେ ଯାନେଽପ୍ୟବଲୋକିତମୁଚ୍ୟତେ ।

ଛାଇକୁ ଦେଖିବା, ବିଚାରକରିବା, ସେବାକରିବା (ଚର୍ଚ୍ଚାକରିବା), ପାଠପଢ଼ିବା, ନିଜଅଙ୍ଗକୁ ଦେଖିବା ଓ ଗମନ ପ୍ରଦର୍ଶନରେ ଅବଲୋକିତ ଦୃଷ୍ଟିର ବ୍ୟବହାର ହୁଏ ।

## ଗ୍ରୀବାଭେଦାଃ

ସୁନ୍ଦରୀ ଚ ତିରଶ୍ଚୀନା ତଥୈବ ପରିବର୍ତ୍ତିତା ।।୭୯ ।।
ପ୍ରକମ୍ପିତା ଚ ଭାବଜ୍ଞୈର୍ଜ୍ଞେୟା ଗ୍ରୀବା ଚତୁର୍ବିଧା ।

ସୁନ୍ଦରୀ, ତିରଶ୍ଚୀନା, ପରିବର୍ତ୍ତିତା ଓ ପ୍ରକମ୍ପିତା – ଏହି ଚାରିପ୍ରକାର ଗ୍ରୀବାଭଙ୍ଗୀ ଭାବଜ୍ଞଗଣଙ୍କର ଜାଣିବା ଆବଶ୍ୟକ ।

## ସୁନ୍ଦରୀଗ୍ରୀବା

ତିର୍ଯ୍ୟକ୍ ଚଞ୍ଚଳତା ଗ୍ରୀବା ସୁନ୍ଦରୀତି ନିଗଦ୍ୟତେ ।। ୮୦ ।।

ତିର୍ଯ୍ୟକ୍ ଭାବରେ ଗ୍ରୀବାର ଚଞ୍ଚଳ ଚାଳନାକୁ ସୁନ୍ଦରୀଗ୍ରୀବା ବୋଲଯାଏ ।

## ବିନିଯୋଗଃ

ସ୍ନେହାରମ୍ଭେ ତଥା ଯତ୍ନେ ସମ୍ୟଗର୍ଥେ ଚ ବସ୍ତୁତେ ।
ସରସଶ୍ଚାନୁମୋଦେ ଚ ସା ଗ୍ରୀବା ସୁନ୍ଦରୀ ମତା ।। ୮୧ ।।

ସ୍ନେହାରମ୍ଭରେ ଯତ୍ନକରିବା, ଭଲ ଅର୍ଥ ପ୍ରକାଶରେ, ବସ୍ତୁତ. ସରସ ଭାବରେ ଓ ଅନୁମୋଦନ କରିବାରେ ସୁନ୍ଦରୀଗ୍ରୀବା ବିନିଯୋଗର ବିଧି ।

## ତିରଶ୍ଚୀନାଗ୍ରୀବା

ପାର୍ଶ୍ୱୟୋରୂର୍ଦ୍ଧ୍ୱଭାଗେ ତୁ ଚଳିତା ସର୍ପଯାନବତ୍ ।
ସା ଗ୍ରୀବା ତୁ ତିରଶ୍ଚୀନେତ୍ୟୁଚ୍ୟତେ ନାଟ୍ୟକୋବିଦୈଃ ।। ୮୨ ।।

ଉଭୟ ପାର୍ଶ୍ୱରେ ଊର୍ଦ୍ଧ୍ୱଭାଗକୁ ସର୍ପଗତିପରି ଗ୍ରୀବା ସଞ୍ଚାଳିତ ହେଲେ ତାକୁ ନାଟ୍ୟକୋବିଦଗଣ ତିରଶ୍ଚୀନା ଗ୍ରୀବା କହନ୍ତି ।

## ବିନିଯୋଗଃ

ଖଡ୍‌ଗଶ୍ରମେ ସର୍ପଗତ୍ୟାଂ ତିରଶ୍ଚୀନା ପ୍ରଯୁଜ୍ୟତେ ।

ଖଡ୍‌ଗଚାଳନାଜନିତ ଶ୍ରମ ଓ ସର୍ପଗତି ପ୍ରଦର୍ଶନରେ ତିରଶ୍ଚୀନା ଗ୍ରୀବା ପ୍ରଯୁଜ୍ୟ ହୁଏ ।

## ପରିବର୍ତ୍ତିତାଗ୍ରୀବା

ସବ୍ୟାପସବ୍ୟଚଳିତା ଗ୍ରୀବା ଯଥାର୍ଦ୍ଧଚନ୍ଦ୍ରବତ୍ ।।୮୩ ।।
ସାହି ନାଟ୍ୟକଳାଭିଜ୍ଞୈର୍ବିଜ୍ଞେୟା ପରିବର୍ତ୍ତିତା ।

ବାମରୁ ଦକ୍ଷିଣକୁ ଅର୍ଦ୍ଧଚନ୍ଦ୍ର ଭାବରେ ଗ୍ରୀବା ସଞ୍ଚାଳିତ ହେଲେ ତାକୁ ନାଟ୍ୟକଳାଭିଜ୍ଞଗଣ ପରିବର୍ତ୍ତିତ ଗ୍ରୀବା କହନ୍ତି ।

## ବିନିଯୋଗଃ

ଶୃଙ୍ଗାରନର୍ତ୍ତନେ କାନ୍ତକପୋଳଦ୍ୱୟଚୁମ୍ବନେ ।।୮୪।।
ନାଟ୍ୟତନ୍ତ୍ରବିଶ୍ରରଜ୍ଞୈଃ ପ୍ରଯୋଜ୍ୟା ପରିବର୍ତ୍ତିତା ।

ଶୃଙ୍ଗାରନୃତ୍ୟରେ, କାନ୍ତର ଗଣ୍ଡଦ୍ୱୟ ଚୁମ୍ବନରେ, ନାଟ୍ୟତନ୍ତ୍ର ବିଶ୍ରରଜ୍ଞଗଣ ପରିବର୍ତ୍ତିତଗ୍ରୀବା ପ୍ରଯୋଜନା କରନ୍ତି ।

## ପ୍ରକମ୍ପିତାଗ୍ରୀବା

ପୁରଃ ପଶ୍ଚାତ ପ୍ରଚଳନାତ୍ କପୋତକଣ୍ଠକମ୍ପବତ୍ ।।୮୫।।
ପ୍ରକମ୍ପିତେତି ସା ଗ୍ରୀବା ନାଟ୍ୟଶାସ୍ତ୍ରେ ପ୍ରଶସ୍ୟତେ ।

କପୋତର କଣ୍ଠ କମ୍ପନଭଳି ଆଗକୁ ପଛକୁ ଗ୍ରୀବା ସଞ୍ଚାଳିତ ହେଲେ ନାଟ୍ୟଶାସ୍ତ୍ରରେ ତାକୁ ପ୍ରକମ୍ପିତ ଗ୍ରୀବା କହନ୍ତି ।

## ବିନିଯୋଗଃ

ଯୁଷ୍ମଦସ୍ମଦର୍ଥ ପ୍ରୋକ୍ତେ ଦେଶୀନାଟ୍ୟେ ବିଶେଷତଃ ।।୮୬।।
ଦୋଳାୟାଂ ମଣିତେ ଚୈବ ପ୍ରୟୋକ୍ତବ୍ୟା ପ୍ରକମ୍ପିତା ।

ତୁମ୍ଭେ ଓ ଆମ୍ଭେ କହିବା, ବିଶେଷ ଭାବରେ ଲୋକନୃତ୍ୟରେ, ଦୋଳ (ଝୁଲଣା) ଓ ମଣିତ (ରତିକୂଜିତ— ରତିକ୍ରିୟା ସମୟରେ ସ୍ତ୍ରୀମାନଙ୍କଦ୍ୱାରା ଉଚ୍ଚାରିତ ଏକପ୍ରକାର ଶବ୍ଦ) ପ୍ରଦର୍ଶନରେ ପ୍ରକମ୍ପିତ ଗ୍ରୀବାର ପ୍ରୟୋଗ ହୁଏ ।

## ହସ୍ତଭେଦାଃ

ଅଥେଦାନୀନ୍ତୁ ହସ୍ତାନାଂ ଲକ୍ଷଣଂ ପ୍ରୋଚ୍ୟତେ ମୟା ।।୮୭।।

ଅସଂଯୁତାଃ ସଂଯୁତାଶ୍ଚ ହସ୍ତଦ୍ୱେଧା ନିରୂପିତା ।
ତତ୍ରାସଂଯୁତହସ୍ତାନାମାଦୌ ଲକ୍ଷଣମୁଚ୍ୟତେ ।। ୮୮ ।।

ଏହାପରେ ବର୍ତ୍ତମାନ ମୋଦ୍ୱାରା ହସ୍ତଲକ୍ଷଣ ଗୁଡ଼ିକ ବର୍ଣ୍ଣିତ ହେବ । ଅସଂଯୁତ ଓ ସଂଯୁତ—ଏହି ଦୁଇପ୍ରକାର ହସ୍ତ ନିରୂପିତ ହୋଇଅଛି । ତେଣୁ ପ୍ରଥମେ ଅସଂଯୁତ ହସ୍ତର ଲକ୍ଷଣ ବୋଲାଯିବ ।

## ଅସଂଯୁତ ହସ୍ତାଃ

ପତାକସ୍ତ୍ରିପତାକୋଽର୍ଦ୍ଧପତାକଃ କର୍ତ୍ତରୀମୁଖଃ ।
ମୟୂରାଖ୍ୟୋଽର୍ଦ୍ଧଚନ୍ଦ୍ରଶ୍ଚ ଅରାଳଃ ଶୁକତୁଣ୍ଡକଃ ।।୮୯।।

ମୁଷ୍ଟିଶ୍ଚ ଶିଖରାଖ୍ୟଶ୍ଚ କପିତ୍ଥଃ କଟକାମୁଖଃ ।
ସୂଚୀ ଚନ୍ଦ୍ରକଳା ପଦ୍ମକୋଶଃ ସର୍ପଶିରସ୍ତଥା ।।୯୦।।

ମୃଗଶୀର୍ଷଃ ସିଂହମୁଖଃ କାଙ୍ଗୁଲଶ୍ଚାଲପଦ୍ମକଃ ।
ଚତୁରୋ ଭ୍ରମରଶ୍ଚୈବ ହଂସାସ୍ୟୋ ହଂସପକ୍ଷକଃ ।। ୯୧।।

ସନ୍ଦଂଶୋ ମୁକୁଳଶ୍ଚୈବ ତାମ୍ରଚୂଡ଼ସ୍ତ୍ରିଶୂଳକଃ ।
ଇତ୍ୟସଂଯୁତ ହସ୍ତାନାମଷ୍ଟାବିଂଶତିରୀରିତା ।। ୯୨।।

ପତାକ, ତ୍ରିପତାକ, ଅର୍ଦ୍ଧପତାକ, କର୍ତ୍ତରୀମୁଖ, ମୟୂର, ଅର୍ଦ୍ଧଚନ୍ଦ୍ର, ଅରାଳ, ଶୁକତୁଣ୍ଡ, ମୁଷ୍ଟି, ଶିଖର, କପିତ୍ଥ କଟକାମୁଖ ସୂଚୀ, ଚନ୍ଦ୍ରକଳା, ପଦ୍ମକୋଶ, ସର୍ପଶିର, ମୃଗଶୀର୍ଷ, ସିଂହମୁଖ, କାଙ୍ଗୁଲ, ଅଳପଦ୍ମ, ଚତୁର, ଭ୍ରମର, ହଂସାସ୍ୟ, ହଂସପକ୍ଷ, ସନ୍ଦଂଶ, ମୁକୁଳ ତାମ୍ରଚୂଡ଼ ଓ ତ୍ରିଶୂଳ – ଅସଂଯୁତହସ୍ତ ଏହି ଅଠାଇଶ ପ୍ରକାର ବୋଲି କଥିତ ।

## ପତାକହସ୍ତଃ

ଅଙ୍ଗୁଲ୍ୟଃ କୁଞ୍ଚିତାଙ୍ଗୁଷ୍ଠଃ ସଂଶ୍ଳିଷ୍ଟା ପ୍ରସୃତା ଯଦା ।
ସ ପତାକକରଃ ପ୍ରୋକ୍ତୋ ନୃତ୍ୟକର୍ମବିଶାରଦୈଃ ।।୯୩।।

ଅଙ୍ଗୁଳିଗୁଡ଼ିକ ସଂଶ୍ଳିଷ୍ଟ ଓ ପ୍ରସାରିତ ହେଲେ ଏବଂ ଅଙ୍ଗୁଷ୍ଠ କୁଞ୍ଚିତ ହେଲେ ନୃତ୍ୟ କର୍ମ ବିଶାରଦଗଣ ତାକୁ ପତାକ ହସ୍ତ କହନ୍ତି ।

## ବିନିଯୋଗଃ

ନାଟ୍ୟାରମ୍ଭେ ବାରବାହେ ବନେ ବସ୍ତୁନିଷେଧନେ ।
କୁଚସ୍ଥଳେ ନିଶାୟାଂ ନଦ୍ୟା ଅମରମଣ୍ଡଳେ ।।୯୪।।
ତୁରଙ୍ଗେ ଖଣ୍ଡନେ ବାୟୌ ଶୟନେ ଗମନୋଦ୍ୟମେ ।
ପ୍ରତାପେ ଚ ପ୍ରସାଦେ ଚ ଚନ୍ଦ୍ରିକାୟାଂ ଘନାତପେ ।।୯୫।।
କବାଟପାଟନେ ସପ୍ତବିଭକ୍ତ୍ୟର୍ଥେ ତରଙ୍ଗକେ ।
ବୀଥି (ବୀଧି) ପ୍ରବେଶ ଭାବେଽପି ସମତ୍ୱେ ଅଙ୍ଗରାଗକେ ।।୯୬।।
ଆତ୍ମାର୍ଥେ ଶପଥେ ଚାପି ତୁଷ୍ଣିଭାବନିଦର୍ଶନେ ।
ତାଳପତ୍ରେ ଚ ଖେଟେ ଚ ଦ୍ରବ୍ୟାଦିସ୍ପର୍ଶନେ ତଥା ।।୯୭।।
ଆଶୀର୍ବାଦକ୍ରିୟାୟାଂ ଚ ନୃପଶ୍ରେଷ୍ଠସ୍ୟ ଭାଷଣେ ।
ତତ୍ର ତତ୍ରେତି ବଚନେ ସିନ୍ଧୌ ଚ ସୁକୃତିକ୍ରମେ ।।୯୮।।
ସମ୍ବୋଧନେ ପୁରଗେଽପି ଖଡ୍‌ଗରୂପସ୍ୟ ଧାରଣେ ।
ମାସେ ସମ୍ବତ୍ସରେ ବର୍ଷାଦିନେ ସମ୍ମାର୍ଜନେ ତଥା ।।୯୯।।
ଏବମର୍ଥେଷୁ ଯୁଜ୍ୟନ୍ତେ ପତାକହସ୍ତ ଭାବନାଃ ।

ନାଟ୍ୟାରମ୍ଭ, ମେଘ, ବନ, ନାହିଁ କରିବା, କୁଚସ୍ଥଳ, ରାତ୍ରି, ନଦୀ, ଅମରମଣ୍ଡଳ ବା ସ୍ୱର୍ଗ, ଅଶ୍ୱ, ଖଣ୍ଡନ, ବାୟୁ, ଶୟନ, ଗମନ କରିବାର ଉଦ୍ୟମ, ପ୍ରତାପ, ପ୍ରସନ୍ନତା, ଚନ୍ଦ୍ରିକା, ସୂର୍ଯ୍ୟକିରଣ, କବାଟ ଖୋଲିବା, ସପ୍ତବିଭକ୍ତି ଅର୍ଥରେ, ତରଙ୍ଗ, ପଥପ୍ରବେଶ ବା ବିଧିପାଳନ, ସମଭାବ, ଅଙ୍ଗରାଗ, ନିଜଅର୍ଥରେ, ଶପଥ, ଚୁପ୍ ରହିବା ଭାବପ୍ରକାଶରେ, ତାଳପତ୍ର, ଢାଲ, ଦ୍ରବ୍ୟାଦି ସ୍ପର୍ଶକରିବାରେ, ଆଶୀର୍ବାଦ କରିବାରେ, ନୃପଶ୍ରେଷ୍ଠ, ସେଇଠି ସେଇଠି କହିବାରେ, ସାଗର, ସୁକୃତି, ସମ୍ବୋଧନ, ଆଗରେ ଯିବା, ଖଡ୍‌ଗଧାରଣ, ମାସ ବର୍ଷ, ବର୍ଷାଦିନ, ଓଳାଇବା ଅର୍ଥରେ ପତାକହସ୍ତ ପ୍ରଯୋଜିତ ହୁଏ ।

## ତ୍ରିପତାକ ହସ୍ତଃ

ସ ଏବ ତ୍ରିପତାକଃ ସ୍ୟାଦ୍‌ବକ୍ରିତାନାମିକାଙ୍ଗୁଳିଃ ।।୧୦୦।।

(ପତାକହସ୍ତରେ) ଅନାମିକାଙ୍ଗୁଳି ବକ୍ରୀତ ହେଲେ ତାହା ତ୍ରିପତାକ ହସ୍ତ ହୁଏ ।

## ବିନିଯୋଗଃ

ମୁକୁଟେ ବୃକ୍ଷଭାବେଷୁ ବଜ୍ରେ ତଦ୍ଧରବାସବେ ।
କେତକୀକୁସୁମେ ଦୀପେ ବହ୍ନିଜ୍ୱାଳା ବିଜୃମ୍ଭଣେ ।।୧୦୧।।

କପୋତେ ପତ୍ରଲେଖାୟାଂ ବାଣାର୍ଥେ ପରିବର୍ତ୍ତନେ ।
ଯୁଜ୍ୟତେ ତ୍ରିପତାକୋଽୟଂ କଥିତୋ ଭରତୋତ୍ତମୈଃ ।।୧୦୨।।

ମୁକୁଟ, ବୃକ୍ଷ ବଜ୍ର ବଜ୍ରଧରଇନ୍ଦ୍ର, କେତକୀଫୁଲ, ଦୀପ, ଲେଲିହାନ ଅଗ୍ନିଶିଖା, କପୋତ ପତ୍ରଲେଖା (ଲଲାଟରେ ବା କୁଚରେ ଯେଉଁ ଚିତ୍ର ଲେଖାଯାଏ) ବାଣ ଓ ପରିବର୍ତ୍ତନରେ ତ୍ରିପତାକ ହସ୍ତ ଯୋଜନା କରାଯାଏ ବୋଲି ଉତ୍ତମ ନାଟ୍ୟ ବିଶାରଦଗଣ କହନ୍ତି ।

## ଅର୍ଦ୍ଧପତାକହସ୍ତଃ

ତ୍ରିପତାକେ କନିଷ୍ଠା ଚେଦ୍ ବକ୍ରିତାଽର୍ଦ୍ଧ ପତାକିକା ।

ତ୍ରିପତାକ ହସ୍ତରେ କନିଷ୍ଠାଙ୍ଗୁଳି ବକ୍ରୀକୃତ ହେଲେ ତାହା ଅର୍ଦ୍ଧ ପତାକ ହସ୍ତ ହୁଏ ।

## ବିନିଯୋଗଃ

ପଲ୍ଲବେ ଫଲକେ ତୀରେ ଉଭୟୋରିତି ବାଚକେ ।।୧୦୩।।
କରେ ଛୁରିକାୟାଂ ଚ ଧ୍ୱଜେ ଗୋପୁରଶୃଙ୍ଗୟୋଃ ।
ଯୁଜ୍ୟତେଽର୍ଦ୍ଧପତାକୋଽୟଂ ତତ୍ତତ୍କର୍ମପ୍ରୟୋଗକେ ।।୧୦୪।।

ପଲ୍ଲବ, ଫଳକ, ନଦୀତୀର, ଦୁଇଟିବୋଲି କହିବା, କରତ, ଛୁରୀ, ପତାକା, ଗୋପୁର ଶିଙ୍ଗ ଅର୍ଥରେ ଅର୍ଦ୍ଧପତାକା ହସ୍ତର ପ୍ରୟୋଗ କରାଯାଏ ।

## କର୍ତ୍ତରୀମୁଖହସ୍ତଃ

ଅସ୍ୟୈବ ତ୍ରୁପି ହସ୍ତସ୍ୟ ତର୍ଜନୀ ଚ କନିଷ୍ଠିକା ।
ବହିଃ ପ୍ରସାରିତେ ଦ୍ୱେତ ସ କରଃ କର୍ତ୍ତରୀମୁଖଃ ।।୧୦୫।।

ସେହି ହସ୍ତ (ଅର୍ଦ୍ଧପତାକ)ରେ ତର୍ଜନୀ ଓ କନିଷ୍ଠାଙ୍ଗୁଳିକୁ ପ୍ରସାର କଲେ ତାହା କର୍ତ୍ତରୀମୁଖ ହସ୍ତ ହୁଏ ।

**ବିନିଯୋଗଃ**

ସ୍ତ୍ରୀପୁଂସଯୋସ୍ତୁ ବିଶ୍ଳେଷେ ବିପର୍ଯ୍ୟାସପଦେଽପି ବା ।
ଲୁଣ୍ଠନେ ନୟନାନ୍ତେ ଚ ମରଣେ ଭେଦଭାବନେ ।।୧୦୬।।

ବିଦ୍ୟୁଦର୍ଥେଽପ୍ୟେକଶଯ୍ୟାବିରହେ ପତନେ ତଥା ।
ଲତାୟାଂ ଯୁଜ୍ୟତେ ଯସ୍ତୁ ସ କରଃ କର୍ତ୍ତରୀମୁଖଃ ।।୧୦୭।।

ସ୍ତ୍ରୀ ପୁରୁଷର ସଂଯୋଗ ଓ ବିୟୋଗ ଭାବରେ, ବିପର୍ଯ୍ୟସ୍ତ ଅବସ୍ଥା ଲୁଣ୍ଠନ, ଚକ୍ଷୁକୋଣ, ମରଣ, ଭେଦଭାବ, ବିଜୁଳି ବିରହା-ବସ୍ଥାରେ ଶଯ୍ୟାରେ ଏକାକୀ ଶୟନ, ପତନ ତଥା ଲତା ଅର୍ଥରେ କର୍ତ୍ତରୀମୁଖ ହସ୍ତର ଯୋଜନା ହୁଏ ।

**ମୟୂରହସ୍ତଃ**

ଅସ୍ମିନ୍ନନାମିକାଙ୍ଗୁଷ୍ଠୌ ଶ୍ଳିଷ୍ଟୌ ଶିଷ୍ଟାଗ୍ରୁନ୍ୟା ପ୍ରସାରିତାଃ ।
ମୟୂରହସ୍ତଃ କଥିତଃ କରଟୀକାବିଚକ୍ଷଣୈଃ ।।୧୦୮।।

ଏହି (କର୍ତ୍ତରୀମୁଖ) ହସ୍ତରେ ଅନାମିକା ଓ ଅଙ୍ଗୁଷ୍ଠକୁ ସଂଯୋଗ କଲେ ଓ ଅନ୍ୟଅଙ୍ଗୁଳିଗୁଡ଼ିକୁ ପ୍ରସାରକଲେ ମୟୂରହସ୍ତ ହୁଏ ବୋଲି କରଟୀକା ବିଚକ୍ଷଣଙ୍କଦ୍ୱାରା କଥିତ ।

**ବିନିଯୋଗଃ**

ମୟୂରାସ୍ୟେ ଲତାୟାଂଚଶକୁନେ ବମନେ ତଥା ।
ଅଲକସ୍ୟାପନୟନେ ଲଲାଟତିଲକେଷୁ ଚ ।।୧୦୯।।

ନଦ୍ୟୁଦକସ୍ୟ ନିକ୍ଷେପେ ଶାସ୍ତ୍ରବାଦେ ପ୍ରସିଦ୍ଧକେ
ଏବମର୍ଥେଷୁ ଯୁଜ୍ୟନ୍ତେ ମୟୂରକରଭାବନାଃ ।।୧୧୦।।

ମୟୂରମୁଖ, ଲତା, ଶକୁନ (ପକ୍ଷୀ), ବାନ୍ତିକରିବା, ଅଳକା (ଚୂର୍ଣ୍ଣକୁନ୍ତଳ) ଅପସାରଣ କରିବାରେ, ଲଲାଟ ତିଳକ ଧାରଣ, ନଦୀଜଳ ନିକ୍ଷେପ, ଶାସ୍ତ୍ରାଲୋଚନା, ପ୍ରସିଦ୍ଧ ଇତ୍ୟାଦି ଅର୍ଥରେ ମୟୂର-ହସ୍ତର ଯୋଜନା କରାଯାଏ ।

# ଅସଂଯୁକ୍ତ ହସ୍ତ



୧ । ପତାକ



୨ । ତ୍ରିପତାକ



୩ । ଅର୍ଦ୍ଧପତାକ



୪ । କର୍ତ୍ତରୀମୁଖ



୫ । ମୟୂର



୬ । ଅର୍ଦ୍ଧଚନ୍ଦ୍ର



୭ । ଅରାଳ



୮ । ଶୁକତୁଣ୍ଡ



୯ । ମୁଷ୍ଟି



୧୦ । ଶିଖର　　୧୧ । କପିତ୍ଥ　　୧୨ । କଟକାମୁଖ



୧୩ । ସୂଚୀ　　୧୪ । ଚନ୍ଦ୍ରକଳା　　୧୫ । ପଦ୍ମକୋଶ



୧୬ । ସର୍ପଶିର　　୧୭ । ମୃଗଶୀର୍ଷ　　୧୮ । ସିଂହମୁଖ



୧୯ । କାଙ୍ଗୁଲ　　୨୦ । ଅଲପଦ୍ମ　　୨୧ । ଚତୁର



୨୨ । ଭ୍ରମର　　୨୩ । ହଂସାସ୍ୟ



୨୪ । ହଂସପକ୍ଷ　　୨୫ । ମୁକୁଲ



୧୬ । ତାମ୍ରଚୂଡ଼ ୧୭ । ତ୍ରିଶୂଳ ୧୮ । ବ୍ୟାଘ୍ର



୧୯ । ଅର୍ଦ୍ଧସୂଚୀ ୨୦ । ପଲ୍ଲୀହସ୍ତ

## ଅର୍ଦ୍ଧଚନ୍ଦ୍ରହସ୍ତଃ

ଅର୍ଦ୍ଧଚନ୍ଦ୍ରକରଃ ସୋଽୟଂ ପତାକେଽଙ୍ଗୁଷ୍ଠସାରଣାତ୍ ।

ପତାକହସ୍ତରେ ଅଙ୍ଗୁଷ୍ଠ ଅପସାରିତ ହେଲେ ତାହା ଅର୍ଦ୍ଧଚନ୍ଦ୍ର ହସ୍ତ ହୁଏ ।

## ବିନିଯୋଗଃ

ଚନ୍ଦ୍ରେ କୃଷ୍ଣାଷ୍ଟମୀଭାଜି ଗଳହସ୍ତାର୍ଥକେଽପିଚ ॥୧୧୧॥

ଭଲ୍ଲାୟୁଧେ ଦେବତାନାମଭିଷେଚନକର୍ମଣି ।
ଭୁକ୍‌ପାତ୍ରେସମୁଦ୍ଭବେ କଟ୍ୟାଂ ଚିନ୍ତାୟାମାତ୍ମବାଚକେ ॥୧୧୨॥

ଧ୍ୟାନେ ଚ ପ୍ରାର୍ଥନେ ଚାପି ଅଙ୍ଗାନାଂ ସ୍ପର୍ଶନେ ତଥା ।
ପ୍ରାକୃତାନାଂ ନମସ୍କାରେ ଅର୍ଦ୍ଧଚନ୍ଦ୍ରୋ ନିୟୁଜ୍ୟତେ ॥୧୧୩॥

କୃଷ୍ଣପକ୍ଷରେ ଅଷ୍ଟମୀତିଥିରଚନ୍ଦ୍ର, ଗଳାଧକ୍‌କାମାରିବା, ବର୍ଚ୍ଛା, ଦେବତାଙ୍କର ଅଭିଷେକ କର୍ମ, ଖାଇବାପାତ୍ର, ଉଦ୍ଭବ, କଟୀ, ଚିନ୍ତାକରି ନିଜେ ନିଜେ କଥାକହିବା, ଧ୍ୟାନ, ପ୍ରାର୍ଥନା, ଅଙ୍ଗସ୍ପର୍ଶ କରିବା, ସାଧାରଣ ଲୋକଙ୍କୁ ନମସ୍କାର କରିବା ଅର୍ଥରେ ଅର୍ଦ୍ଧଚନ୍ଦ୍ରହସ୍ତ ନିୟୁକ୍ତ ହୁଏ ।

## ଅରାଳହସ୍ତଃ

ପତାକେ ତର୍ଜ୍ଜନୀ ବକ୍ରା ନାମ୍ନା ସୋଽୟମରାଳକଃ ।

ପତାକ ହସ୍ତରେ ତର୍ଜ୍ଜନୀକୁ ବକ୍ରକଲେ ତାକୁ ଅରାଳହସ୍ତ କହନ୍ତି ।

## ବିନିଯୋଗଃ

ବିଷାଦ୍ୟମୃତପାନେଷୁ ପ୍ରଚଣ୍ଡପବନେଽପିଚ ॥୧୧୪॥

ବିଷ ଓ ଅମୃତପାନ ଏବଂ ପ୍ରଚଣ୍ଡ ପବନ ଅର୍ଥରେ ଏହାର ବିନିଯୋଗ ହୁଏ ।

## ଶୁକତୁଣ୍ଡହସ୍ତଃ

ଅସ୍ମିନ୍ନନାମିକା ବକ୍ରା ଶୁକତୁଣ୍ଡକରୋଭବେତ୍ ।

ସେହି (ଅରାଳ) ହସ୍ତରେ ଅନାମିକା ଅଙ୍ଗୁଳି ବକ୍ର କଲେ ତାହା ଶୁକତୁଣ୍ଡ ହସ୍ତ ହୁଏ ।

## ବିନିଯୋଗଃ

ବାଣ ପ୍ରୟୋଗେ କୁନ୍ତାର୍ଥେ ବାଽଲୟସ୍ୟ ସ୍ମୃତିକ୍ରମେ ॥୧୧୫॥
ମର୍ମୋକ୍ତ୍ୟାମୁଗ୍ରଭାବେଷୁ ଶୁକତୁଣ୍ଡୋ ନିଯୁଜ୍ୟତେ ।

ବାଣ ପ୍ରୟୋଗ କରିବା, କୁନ୍ତ ବା ବର୍ଚ୍ଛା, ଗୃହସ୍ମରଣ, ମର୍ମକଥା କହିବାରେ, ଉଗ୍ରଭାବରେ ଶୁକତୁଣ୍ଡହସ୍ତ ଯୋଜିତ ହୁଏ ।

## ମୁଷ୍ଟିହସ୍ତଃ

ମେଳନାଦଙ୍ଗୁଳୀନାଞ୍ଚ କୁଞ୍ଚିତାନାଂ ତଳାନ୍ତରେ ॥୧୧୬॥
ଅଙ୍ଗୁଷ୍ଠୋପରିଯୁକ୍ତୋ ମୁଷ୍ଟିହସ୍ତୋଽୟମୀରିତେ ।

ଅଙ୍ଗୁଳିଗୁଡ଼ିକୁ ମିଳିତ କରି ତଳଭାଗରେ କୁଞ୍ଚିତ କଲେ ଓ ତଦୁପରେ ଅଙ୍ଗୁଷ୍ଠକୁ ଯୁକ୍ତକଲେ ତାହା ମୁଷ୍ଟିହସ୍ତ ହୁଏ ।

## ବିନିଯୋଗଃ

ସ୍ଥିରେ କଚଗ୍ରହେ ଦାର୍ଢ୍ୟେ ବସ୍ତ୍ୱାଦୀନାଞ୍ଚ ଧାରଣେ ॥୧୧୭॥
ମଲ୍ଲାନାଂ ଯୁଦ୍ଧଭାବେଽପି ମୁଷ୍ଟିହସ୍ତୋଽୟମିଷ୍ୟତେ ।

ସ୍ଥିରଭାବ, କେଶଧରିବା, ଦୃଢ଼ତା, ବସ୍ତୁଆଦିଧାରଣ ଓ ମଲ୍ଲଯୁଦ୍ଧ ଭାବରେ ମୁଷ୍ଟିହସ୍ତ ପ୍ରୟୋଗ ହୁଏ ।

## ଶିଖରହସ୍ତଃ

ତେନ୍ମୁଷ୍ଟିରୁନ୍ନତାଙ୍ଗୁଷ୍ଠଃ ସ ଏବ ଶିଖରଃ କରଃ ॥୧୧୮॥

ମୁଷ୍ଟି ହସ୍ତରେ ଅଙ୍ଗୁଷ୍ଠକୁ ଉନ୍ନତ କଲେ ତାହା ଶିଖର କର ହୁଏ ।

## ବିନିଯୋଗଃ

ମଦନେ କାର୍ମୁକେସ୍ତମ୍ଭେ ନଷ୍ଟପ୍ତେ ପିତୃକର୍ମଣି ।
ଓଷ୍ଠେ ପ୍ରବିଷ୍ଟରୂପେ ଚ ରଦନେ ପ୍ରଶ୍ନଭାବନେ ।।୧୧୯।।
ଲଙ୍ଗେ ନାସ୍ତୀତିବଚନେ ସ୍ମରଣେଽଭିନୟାନ୍ତିକେ ।
କଟିବନ୍ଧାକର୍ଷଣେ ଚ ପରିରମ୍ଭବିଧିକ୍ରମେ ।।୧୨୦।।
ଘଣ୍ଟାନିନାଦେ ଶିଖରୋ ଯୁଜ୍ୟତେ ଭରତାଦିଭିଃ ।

ମଦନ (କାମଦେବ), ଧନୁ, ସ୍ତମ୍ଭ, ନିଷ୍ଟପ୍ତ, ପିତୃକର୍ମ ବା ଶ୍ରାଦ୍ଧ ଓଷ୍ଠ, ପ୍ରବେଶକରିବା, ଦନ୍ତ, ପ୍ରଶ୍ନକରିବା, ଲିଙ୍ଗ, ନାହିଁ-କରିବା ସ୍ମରଣ କରିବା, ଅଭିନୟର ଶେଷ (ସମୀପ), କଟୀବନ୍ଧ-ଭିଡ଼ିବା, ଆଲିଙ୍ଗନ କରିବା ଓ ଘଣ୍ଟାନିନାଦ ଅର୍ଥରେ ଭରତାଦି ଶିଖରହସ୍ତର ପ୍ରଯୋଜନା କରନ୍ତି ।

## କପିତ୍ଥହସ୍ତଃ

ଅଙ୍ଗୁଷ୍ଠମୂର୍ଦ୍ଧ୍ନି ଶିଖରେ ବକ୍ରିତା ଯଦି ତର୍ଜନୀ ।।୧୨୧।।
କପିତ୍ଥାଖ୍ୟଃ କରଃ ସୋଽୟଂ କୀର୍ତ୍ତିତୋ ନୃତ୍ତକୋବିଦୈଃ ।

ଅଙ୍ଗୁଷ୍ଠର ଶିଖର ଦେଶରେ ଯଦି ତର୍ଜନୀ ବକ୍ରିତ ହୁଏ ତାହାହେଲେ ନୃତ୍ୟକୋବିଦଗଣ କପିତ୍ଥହସ୍ତ କହନ୍ତି ।

## ବିନିଯୋଗଃ

ଲକ୍ଷ୍ମ୍ୟାଂଚୈବ ସରସ୍ୱତ୍ୟାଂ ନଟାନାଂ ତାଳଧାରଣେ ।।୧୨୨।।
ଗୋଦୋହନେଽପ୍ୟଞ୍ଜନେ ଚ ଲୀଲାକୁସୁମଧାରଣେ ।
ଚେଲାଞ୍ଚଳାଦିଗ୍ରହଣେ ପଟସ୍ୟୈବାବଗୁଣ୍ଠନେ ।।୧୨୩।।
ଧୂପଦୀପାର୍ଚ୍ଚନେ ଚାପି କପିତ୍ଥଃ ସଂପ୍ରଯୁଜ୍ୟତେ ।

ଲକ୍ଷ୍ମୀ ଓ ସରସ୍ୱତୀ, ନଟଦ୍ୱାରା ତାଳ ଧାରଣ, ଗାଈଦୁହିଁବା, ଅଞ୍ଜନ, ଲୀଲାକୁସୁମ ଧାରଣ ବସ୍ତ୍ରାଞ୍ଚଳ ଧାରଣ, ବସ୍ତ୍ରଦ୍ୱାରା ଅବ-ଗୁଣ୍ଠନ (ଓଢ଼ଣା) ଓ ଧୂପଦୀପ ଅର୍ଚ୍ଚନାରେ କପିତ୍ଥହସ୍ତର ପ୍ରଯୋଜନା ହୁଏ ।

## କଟକାମୁଖହସ୍ତଃ

କପିତ୍ଥେତର୍ଜନୀ ଯୁକ୍ତ ଉର୍ଦ୍ଧ୍ୱମୁକ୍ତି ତାଙ୍ଗୁଷ୍ଠ ମଧ୍ୟମା ॥୧୨୪॥
କଟକାମୁଖହସ୍ତୋଽୟଂ କୀର୍ତ୍ତିତୋ ଭରତାଗମୈଃ ।

କପିତ୍ଥହସ୍ତରେ ତର୍ଜ୍ଜନୀ ସହିତ ଉର୍ଦ୍ଧ୍ୱୋତ୍ଥିତ ଅଙ୍ଗୁଷ୍ଠ ଓ ମଧ୍ୟମା ମିଳିତ ହେଲେ ତାହା ଭରତଶାସ୍ତ୍ରସମୂହଦ୍ୱାରା କଟକାମୁଖହସ୍ତ ନାମରେ କଥିତ ହୁଏ ।

## ବିନିଯୋଗଃ

କୁସୁମାବଚୟେ ମୁକ୍ତାସ୍ରଗ୍‌ଧାମ୍ନାଂ ଧାରଣେ ତଥା ॥୧୨୫॥
ଶରମଧ୍ୟାକର୍ଷଣେ ଚ ନାଗବଲ୍ଲୀପ୍ରଦାନକେ ।
କସ୍ତୁରିକାଦିବସ୍ତୁନାଂ ପେଷଣେ ଗନ୍ଧବାସନେ ॥୧୨୬॥
ବଚନେ ଦୃଷ୍ଟିଭାବେଽପି କଟକାମୁଖ ଇଷ୍ୟତେ ।

ଫୁଲତୋଳିବା, ମୁକ୍ତାମାଳାଧାରଣ, ଶରକୁ ମଧ୍ୟଦେଶ ପର୍ଯ୍ୟନ୍ତ ଆକର୍ଷଣ, ତାମ୍ବୁଳ (ପାନ) ପ୍ରଦାନ, କସ୍ତୁରୀ ଆଦି ଗନ୍ଧ ବସ୍ତୁର ପେଷଣ, ସୁଗନ୍ଧୀକରଣ, ବଚନ ଓ ଦୃଷ୍ଟି ଅର୍ଥରେ କଟକାମୁଖହସ୍ତର ଯୋଜନା ହୁଏ ।

## ସୂଚୀହସ୍ତଃ

ଉର୍ଦ୍ଧ୍ୱପ୍ରସାରିତା ଯତ୍ର କଟକାମୁଖତର୍ଜନୀ ॥୧୨୭॥
ସୂଚୀହସ୍ତଃ ସ ବିଜ୍ଞେୟୋ ଭରତାଗମକୋବିଦୈଃ ।

କଟକାମୁଖହସ୍ତ ମୁଦ୍ରାରେ ତର୍ଜନୀ ଉର୍ଦ୍ଧ୍ୱକୁ ପ୍ରସାରିତ ହେଲେ ନାଟ୍ୟଶାସ୍ତ୍ରବିଶେଷଜ୍ଞଗଣ ତାହାକୁ ସୂଚୀହସ୍ତ କହନ୍ତି ।

ଏକାର୍ଥେଽପି ପରବ୍ରହ୍ମଭାବନାୟାଂ ଶତେଽପି ଚ ॥୧୨୮॥
ରବୌ ନଗର୍ଯ୍ୟାଂ ଲୋକାର୍ଥେ ତଥେତି ବଚନେଽପି ଚ ।
ଯଚ୍ଛବ୍ଦେଽପି ତଚ୍ଛବ୍ଦେ ବିଜନାର୍ଥେଽପି ତର୍ଜନେ ॥୧୨୯॥

କାର୍ଶ୍ୟେ ଶଲାକେ ବପୁଷି ଆଶ୍ଚର୍ଯ୍ୟେ ବେଣିଭାବନେ ।
ଛନ୍ନେ ସମର୍ଥେ ପାଣୌ ଚ ରୋମାଳ୍ୟାଂ ଭେରୀବାଦନେ ।।୧୩୦।।
କୁଲାଲ ଚକ୍ରଭ୍ରମଣେ ରଥାଙ୍ଗମଣ୍ଡଳେ ତଥା ।
ବିବେଚନେ ଦିନାନ୍ତେ ଚ ସୂଚୀହସ୍ତଃ ପ୍ରକୀର୍ତ୍ତିତଃ ।।୧୩୧।।

ଏକ, ପରଂବ୍ରହ୍ମ ଭାବନା, ଏକଶହ, ସୂର୍ଯ୍ୟ, ନଗର, ଲୋକଅର୍ଥରେ, ସେପରି କହିବା ଅର୍ଥରେ, ଯେ ଓ ସେ ଅର୍ଥରେ, ଏକାନ୍ତ, ତାଡ଼ନା କରିବା, କୃଶତା (ପତଳା), ଅଞ୍ଜନ ଲଗାଇବା କାଠି, ଶରୀର, ଆଶ୍ଚର୍ଯ୍ୟ, ବେଣୀଭାବ, ଛନ୍ନ, ସମର୍ଥ, ହସ୍ତ, ରୋମାବଳୀ, ଭେରୀବାଦନ, କୁମ୍ଭାର ଚକବୁଲେଇବା, ରଥଚକ୍ରରପରିଧି, ବିବେଚନା, ଦିନାନ୍ତ ବା ସନ୍ଧ୍ୟା ପ୍ରଭୃତି ଅର୍ଥରେ ସୂଚୀହସ୍ତର ବ୍ୟବହାର ହୁଏ ।

## ଚନ୍ଦ୍ରକଳାହସ୍ତଃ

ସୂଚ୍ୟାମଙ୍ଗୁଷ୍ଠମୋକ୍ଷେତୁ କରଶ୍ଚନ୍ଦ୍ରକଳା ଭବେତ୍ ।

ସୂଚୀ ହସ୍ତ ମୁଦ୍ରାରେ ଅଙ୍ଗୁଷ୍ଠାକୁ ଗୁଡ଼ିଦେଲେ ତାହା ଚନ୍ଦ୍ରକଳା ହସ୍ତ ହୁଏ ।

## ବିନିଯୋଗଃ

ଚନ୍ଦ୍ରେ ମୁଖେ ଚ ପ୍ରାଦେଶେ ତନ୍ମାତ୍ରାକାରବସ୍ତୁନ ।।୧୩୨।।
ଶିବସ୍ୟମୁକୁଟେ ଗଙ୍ଗାନଦ୍ୟାଂ ଚ ଲଗୁଡ଼େଽପି ଚ ।
ଏଷାଂ ଚନ୍ଦ୍ରକଳା ଚୈବ ବିନିଯୋଜ୍ୟା ବିଧୀୟତେ ।।୧୩୩।।

ଚନ୍ଦ୍ର, ମୁଖ, ପ୍ରାଦେଶ (ପରିମାପ), ସେହି ପରିମାପ ବସ୍ତୁ, ଶିବଙ୍କର ମୁକୁଟ, ଗଙ୍ଗାନଦୀ, ଲଗୁଡ଼ ବା ଯଷ୍ଟି ଅର୍ଥରେ ଚନ୍ଦ୍ରକଳା ହସ୍ତର ବିନିଯୋଗ ବିଧି ।

## ପଦ୍ମକୋଶହସ୍ତଃ

ଅଙ୍ଗୁଲ୍ୟୋ ବିରଳା କିଞ୍ଚିତ୍କୁଞ୍ଚିତା ସ୍ତଳନମ୍ରଗାଃ ।
ପଦ୍ମକୋଶାଭିଧୋ ହସ୍ତସ୍ତନ୍ନିରୂପଣମୁଚ୍ୟତେ

ଅଙ୍ଗୁଳିଗୁଡ଼ିକ କୁଞ୍ଚିତ ଅଲଗା ଅଲଗା ଭାବରେ ନମ୍ର ଦାଗଙ୍କୁ କୁଞ୍ଚିତ ହେଲେ ତାହା ପଦ୍ମକୋଶ ହସ୍ତ ନିରୂପିତ ହୁଏ ।

## ବିନିଯୋଗଃ

ଫଳେ ବିଲ୍ୱକପିତ୍ଥାଦୌ ସ୍ତ୍ରୀଣାଂ ଚ କୁଚକୁମ୍ଭୟୋଃ ।
ଆବର୍ତ୍ତେକନ୍ଦୁକେ ସ୍ଥାଲ୍ୟାଂ ଭୋଜନେ ପୁଷ୍ପକୋରକେ ॥୧୩୫॥
ସହକାରଫଳେ ପୁଷ୍ପବର୍ଷେ ମଞ୍ଜରିକାଦିଷୁ ।
ଜବାକୁସୁମ ଭାବେ ଚ ଘଣ୍ଟାରୂପେ ବିଧାନକେ ॥୧୩୬॥
ବଲ୍ମୀକେ କମଳେଽପ୍ୟଣ୍ଡେ ପଦ୍ମକୋଶୋ ବିଧୀୟତେ ।

ବେଲ, କଇଁଥ ଆଦି ଫଳ ରମଣୀର କୁଚକୁମ୍ଭ ଆବର୍ତ୍ତ, କନ୍ଦୁକ, ଥାଳି, ଭୋଜନ, ଫୁଲକଢ଼ି ଆମ୍ବଫଳ, ପୁଷ୍ପବର୍ଷଣ, ପୁଷ୍ପମଞ୍ଜରୀ, ଜବାକୁସୁମ ଘଣ୍ଟାର ଆକାର ବିଧାନ, ଉଇହୁଙ୍କା, ପଦ୍ମ, ଅଣ୍ଡା ପ୍ରଭୃତି ବୁଝାଇବାରେ ପଦ୍ମକୋଶ ହସ୍ତ ବ୍ୟବହାର ହୁଏ ।

## ସର୍ପଶୀର୍ଷହସ୍ତଃ

ପତାକାନମିତାଗ୍ରାଚେତ୍ ସର୍ପଶୀର୍ଷକରୋ ଭବେତ୍ ॥୧୩୭॥

ପତାକହସ୍ତର ଅଗ୍ରଭାଗକୁ ନମିତ କଲେ ତାହା ସର୍ପଶୀର୍ଷ ହସ୍ତ ହୁଏ ।

## ବିନିଯୋଗଃ

ଚନ୍ଦନେ ଭୁଜଗେ ମନ୍ଦେ ପ୍ରୋକ୍ଷଣେ ପୋଷଣାଦିଷୁ ।
ଦେବତର୍ପ୍ୟାଦିକ ଦାନେଷୁ ଆସ୍ଫାଳେ ଗଜକୁମ୍ଭୟୋଃ ॥୧୩୮॥
ଭୁଜସ୍ଥାନେ ମଲ୍ଲାନାଂ ତୁ ଯୁଜ୍ୟତେ ସର୍ପଶୀର୍ଷକଃ ।

ଚନ୍ଦନ, ସର୍ପ, ଗମ୍ଭୀର (ଧ୍ୱନି) ସିଞ୍ଚନ, ପାଳନ କରିବା, ଦେବତାଙ୍କ ଉଦ୍ଦେଶ୍ୟରେ ଜଳଦାନ, ଆସ୍ଫାଳନ, ଗଜକୁମ୍ଭ, ମଲ୍ଲଯୋଦ୍ଧାଗଣଙ୍କର ଭୁଜସ୍ଥାନ ଅର୍ଥରେ ସର୍ପଶୀର୍ଷ ହସ୍ତର ଯୋଜନା କରାଯାଏ ।

## ମୃଗଶୀର୍ଷଃ

ଅସ୍ମିନ୍ କନିଷ୍ଠକାଙ୍ଗୁଷ୍ଠୌ ପ୍ରସୃତେ ମୃଗଶୀର୍ଷକଃ ।।୧୩୯।।

ସେହି ହସ୍ତ (ସର୍ପଶୀର୍ଷ)ରେ କନିଷ୍ଠ ଓ ଅଙ୍ଗୁଷ୍ଠାକୁ ଊର୍ଦ୍ଧ୍ୱକୁ ପ୍ରସାରକଲେ ତାହା ମୃଗଶୀର୍ଷ ହସ୍ତ ହୁଏ ।

## ବିନିଯୋଗଃ

ସ୍ତ୍ରୀଣାମର୍ଥେକପୋଳେ ଚ ଚକ୍ରମର୍ଯ୍ୟାଦୟୋରପି ।
ଭୀତ୍ୟାଂ ବିବାଦେ ନେପଥ୍ୟେ ଆହ୍ୱାନେ ସ ତ୍ରିପୁଣ୍ଡ୍ରକେ ।।୧୪୦।।

ମୃଗମୁଖେ ରଙ୍ଗମଲ୍ଲ୍ୟାଂ ପାଦସମ୍ବାହନେ ତଥା ।
~~ସର୍ବସ୍ୱେ ମିଳନେ କାମମନ୍ଦିରେ ଛତ୍ରଧାରଣେ~~ ।।୧୪୧।।
ସଞ୍ଚାରେ ଚ ପ୍ରିୟାହ୍ୱାନେ ଯୁଜ୍ୟତେ ମୃଗଶୀର୍ଷକଃ ।

ସ୍ତ୍ରୀ ଅର୍ଥରେ, କପୋଳ (ଗଣ୍ଡର ନିମ୍ନଦେଶ), ଚକ୍ର, ମର୍ଯ୍ୟାଦା (ସୀମା), ଭୀତ, ବିବାଦ, ନେପଥ୍ୟ, ଆହ୍ୱାନ, ତ୍ରିପୁଣ୍ଡ୍ରକ (କପାଳରେ ତିନୋଟି ତିର୍ଯ୍ୟକଗାମୀ ଭସ୍ମରେଖା), ମୃଗମୁଖ, ରଙ୍ଗମଲ୍ଲୀ, ପାଦମୋଡ଼ିବା, ସର୍ବସ୍ୱ, ମିଳନ, କାମମନ୍ଦିର (ଯୋନି), ଛତ୍ରଧାରଣ ସଞ୍ଚାର (ବୁଲିବା) ପ୍ରିୟ ଆହ୍ୱାନ ଅର୍ଥରେ ମୃଗଶୀର୍ଷ ହସ୍ତର ଯୋଜନା ହୁଏ ।

## ସିଂହମୁଖହସ୍ତଃ

ମଧ୍ୟମାନାମିକାଗ୍ରାଭ୍ୟାମଙ୍ଗୁଷ୍ଠୋ ମିଶ୍ରିତୋ ଯଦି ।।୧୪୨।।
ଶେଷୌ ପ୍ରସାରିତୌ ଯତ୍ର ସ ସିଂହାସ୍ୟକରୋ ଭବେତ୍ ।

ମଧ୍ୟମା ଓ ଅନାମିକାକୁ ଅଙ୍ଗୁଷ୍ଠା ସହିତ ମିଳିତ କରି ଅନ୍ୟାଙ୍ଗୁଳିଗୁଡ଼ିକ ପ୍ରସାର କଲେ ତାହା ସିଂହମୁଖହସ୍ତ ହୁଏ ।

## ବିନିଯୋଗଃ

ହୋମେ ଶଶେ ଗଜେ ଦର୍ଭଚଲନେ ପଦ୍ମଦାମନି ।।୧୪୩।।
ସିଂହାନନେ ବୈଦ୍ୟପାକେ ଶୋଧନେ ସମ୍ପ୍ରଯୁଜ୍ୟତେ ।

ହୋମ, ଶଶକ, ହସ୍ତୀ, କୁଶତୂଳନା, ପଦ୍ମମାଳା, ସିଂହମୁଖ, ବୈଦ୍ୟପାକ (ଔଷଧ ଇତ୍ୟାଦି) ଓ ଶୋଧନ ବୁଝାଇବାରେ ସିଂହମୁଖ ମୁଦ୍ରା ପ୍ରଯୁଜ୍ୟ ।

## କାଙ୍ଗୁଳହସ୍ତଃ

ପଦ୍ମକୋଶେଽନାମିକା ଚେନ୍ନମ୍ରାକାଙ୍ଗୁଳହସ୍ତକଃ ॥୧୪୪॥

ପଦ୍ମକୋଶ ହସ୍ତରେ ଅନାମିକା ଅଙ୍ଗୁଳିକୁ ବନ୍ଦ କଲେ ତାହା କାଙ୍ଗୁଳ ହସ୍ତ ହୁଏ ।

## ବିନିଯୋଗଃ

ଲକୁଚସ୍ୟଫଳେ ବାଲକର୍ଣ୍ଣିଣ୍ୟାଂ ଘଣ୍ଟିକାର୍ଥକେ ।

ଚକୋରେ କ୍ରମୁକେ ବାଲକୁଚେ କହ୍ଲାରକେ ତଥା ॥୧୪୫॥

ଶୃତକେ ନାଳିକେରେ ଚ କାଙ୍ଗୁଳୋ ଯୁଜ୍ୟତେ କରଃ ।

ଲକୁଚଫଳ ଟ୍ରେଝିପିଲ୍ ପିନ୍ଧିବା କର୍ଣ୍ଣିଣୀ, ଘଣ୍ଟି, ଚକୋର, ଗୁଆଗଛ, କଶୋରୀ କନ୍ୟାର କୁଚ, ଧଳାକଇଁଫୁଲ ଓ ନଡ଼ିଆ ଅର୍ଥରେ କାଙ୍ଗୁଳ ହସ୍ତର ବିନିଯୋଗ ହୁଏ ।

## ଅଳପଦ୍ମହସ୍ତଃ

କନିଷ୍ଠାଦ୍ୟା ବକ୍ରିତାଶ୍ଚ ବିରଳାଶ୍ଚାଳପଦ୍ମକଃ ॥୧୪୬॥

କନିଷ୍ଠାଦି ସମସ୍ତ ଅଙ୍ଗୁଳି ବକ୍ରିତ ହୋଇ ଅଲଗା ଅଲଗା ଭାବରେ ରହିଲେ ତାହା ଅଳପଦ୍ମ ହସ୍ତ ହୁଏ ।

## ବିନିଯୋଗଃ

ବିକଚାବ୍ଜେ କପିତ୍ଥାଦିଫଲେ ଶୃବର୍ତ୍ତିକେ କୁଚେ ।

ବିରହେ ମୁକୁରେ ପୂର୍ଣ୍ଣଚନ୍ଦ୍ରେ ସୌନ୍ଦର୍ଯ୍ୟଭାବନେ ॥୧୪୭॥

ଧମ୍ମିଲ୍ଲେ ଚନ୍ଦ୍ରଶାଳାୟାଂ ଗ୍ରାମେ ଚୋଦ୍ଧୃତକୋପୟୋଃ ।
ତଟାକେ ଶକଟେ ଚକ୍ରବାକେ କଳକଳାରବେ ।।୧୪୮।।
ଶ୍ଲାଘନେ ସୋଽଲପଦ୍ମସ୍ତୁ କୀର୍ତ୍ତିତୋ ଭରତାଗମେ ।

ପ୍ରସ୍ଫୁଟିତ କମଳ କଇଥ ଆଦି ଫଳ. ଆବର୍ତ୍ତ, ସ୍ତନ, ବିରହ, ନୂପୁର. ପୂର୍ଣ୍ଣଚନ୍ଦ୍ର. ସୌନ୍ଦର୍ଯ୍ୟଭାବନା. ଜୁଡ଼ା (ଉର୍ଦ୍ଧ୍ୱ କବରୀ) ଚନ୍ଦ୍ରଶାଳା. ଗ୍ରାମ, ଉଦ୍ଧୃତ (ପଦାର୍ଥ) କ୍ରୋଧ, ତଡ଼ାଗ. ଶୀତ, ଚକ୍ରବାକ କଳକଳରବ ଓ ପ୍ରଶଂସା ଅର୍ଥରେ ଅଲପଦ୍ମହସ୍ତର ବ୍ୟବହାର ହୁଏ ବୋଲି ନାଟ୍ୟଶାସ୍ତ୍ରରେ ଉଲ୍ଲେଖ ଅଛି ।

## ଚତୁରହସ୍ତଃ

ତର୍ଜ୍ଜନ୍ୟାଦ୍ୟାସ୍ତ୍ରୟଃ ଶ୍ଲିଷ୍ଟାଃ କନିଷ୍ଠା ପ୍ରସୃତା ଯଦା ।।୧୪୯।।
ଅଙ୍ଗୁଷ୍ଠୋଽନାମିକାମୂଳେ ତିର୍ଯ୍ୟକ୍ ଚେଚ୍ଚତୁରଃ କରଃ ।

ତର୍ଜ୍ଜନୀ ଆଦି ଅଙ୍ଗୁଳି ସଂଯୁକ୍ତ ହୋଇ ଯଦି କନିଷ୍ଠା ପ୍ରସାରିତ ହୋଇଥାଏ ଏବଂ ଅଂଗୁଷ୍ଠ ଅନାମିକାର ମୂଳକୁ ତିର୍ଯ୍ୟକ୍ ଭାବରେ ଯୋଗ କରୁଥାଏ ତାହା ଚତୁରହସ୍ତ ହୁଏ ।

## ବିନିଯୋଗଃ

କସ୍ତୂର୍ଯ୍ୟାଂ କିଞ୍ଚିଦର୍ଥେ ଚ ସ୍ୱର୍ଣ୍ଣେ ତାମ୍ରେ ଚ ଲୋହକେ ।।୧୫୦।।
ଆର୍ଦ୍ରେ ଖେଦେ ରସାସ୍ୱାଦେ ଲୋଚନେ ବର୍ଣ୍ଣଭେଦନେ ।
ପ୍ରମାଣେ ସରସେ ମନ୍ଦଗମନେ ଶକଲୀକୃତେ ।।୧୫୧।।
ଆନନେ ଘୃତତୈଲାଦୌ ଯୁଜ୍ୟତେ ଚତୁରଃ କରଃ ।

କସ୍ତୁରୀ, ଟିକିଏ ଅର୍ଥରେ, ସୁନା, ତମ୍ବା, ଲୁହା, ଆର୍ଦ୍ର (ଓଦା). ଦୁଃଖ, ରସାସ୍ୱାଦନ, ଚକ୍ଷୁ, ବର୍ଣ୍ଣ (ଜାତି)ଭେଦ, ପ୍ରମାଣ, ସରସତା, ମନ୍ଦଗମନ, ଖଣ୍ଡଖଣ୍ଡ କରିବା, ମୁଖ, ଘିଅ ଓ ତେଲ ଅର୍ଥରେ ଚତୁର କରର ବ୍ୟବହାର ହୁଏ ।

## ଭ୍ରମର ହସ୍ତଃ

ମଧ୍ୟମାଂଗୁଷ୍ଠସଂଯୋଗେ ତର୍ଜ୍ଜନୀ ବକ୍ରିତାକୃତିଃ ॥୧୫୨॥
ଶେଷାଃ ପ୍ରସାରିତାଶ୍ଚାସୌ ଭ୍ରମରାଭିଧ-ହସ୍ତକଃ ।

ମଧ୍ୟମା ଓ ଅଂଗୁଷ୍ଠାକୁ ଯୋଗକରି, ତର୍ଜ୍ଜନୀକୁ ବକ୍ରିତ କରି ଅନ୍ୟ ଅଂଗୁଳି ଗୁଡ଼ିକ ପ୍ରସାର କଲେ ତାହା ଭ୍ରମରହସ୍ତ ହୁଏ ।

## ବିନିଯୋଗଃ

ଭ୍ରମରେ ଚ ଶୁକେ ପକ୍ଷେ ସାରସେ କୋକିଳାଦିଷୁ ॥୧୫୩॥
ଭ୍ରମରାଖ୍ୟଶ୍ଚ ହସ୍ତୋଽୟଂ କୀର୍ତ୍ତିତୋ ଭରତାଗମେ ।

ଭ୍ରମର, ଶୁକ, ସାରସ, କୋକିଳ ଆଦି ପକ୍ଷୀ ଅର୍ଥରେ ଭ୍ରମରହସ୍ତ ବ୍ୟବହୃତ ହୁଏ ବୋଲି ନାଟ୍ୟଶାସ୍ତ୍ରରେ କୁହାଯାଇଛି ।

## ହଂସାସ୍ୟହସ୍ତଃ

ମଧ୍ୟମାଦ୍ୟାସ୍ତ୍ରୟୋଽଙ୍ଗୁଲ୍ୟଃ ପ୍ରସୃତା ବିରଳା ଯଦି ॥୧୫୪॥
ତର୍ଜ୍ଜନ୍ୟଂଗୁଷ୍ଠସଂଶ୍ଳେଷାତ୍ କରେ ହଂସାସ୍ୟକୋ ଭବେତ୍ ।

ମଧ୍ୟମା ଆଦି ତିନି ଅଂଗୁଳି (ମଧ୍ୟମା, ଅନାମିକା ଓ କନିଷ୍ଠା) ପ୍ରସାରିତ ହୋଇ ଅଲଗା ଅଲଗା ଭାବରେ ରହିଲେ ଏବଂ ତର୍ଜ୍ଜନୀ ଓ ଅଂଗୁଷ୍ଠା ସଂଯୁକ୍ତ ହେଲେ ତାହା ହଂସାସ୍ୟହସ୍ତ ହୁଏ ।

## ବିନିଯୋଗଃ

ମାଙ୍ଗଲ୍ୟେ ସୂତ୍ରବନ୍ଧେ ଚ ଉପଦେଶବିନିଶ୍ଚୟେ ॥୧୫୫॥
ରୋମାଞ୍ଚେ ମୌକ୍ତିକାଦୌ ଚ ଦୀପବର୍ତ୍ତି ପ୍ରସାରଣେ ।
ନିକଷେ ମଲ୍ଲିକାଦୌ ଚ ଚିତ୍ରେ ତଲ୍ଲେଖନେ ତଥା ॥୧୫୬॥
ଦଂଶେ ଚ ଜଳବନ୍ଧେ ଚ ହଂସାସ୍ୟୋ ଯୁଜ୍ୟତେ କରଃ ।

ମଙ୍ଗଳ ସୂତ୍ରବନ୍ଧନ, ଉପଦେଶ ନଷ୍ଟସୂଚକରିବା, ରୋମାଞ୍ଚ, ମୁକ୍ତା, ଧାପର ସଳତା ଟେକିବା, କଷଟୀପଥର; ମଲ୍ଲୀଫୁଲ, ଚନ୍ଦ୍ର ଓ ତାହାର ଲେଖନ, ଦଂଶନ ଓ ଜଳବନ୍ଧ ଅର୍ଥରେ ହଂସାସ୍ୟକରର ଯୋଜନା ହୁଏ ।

## ହଂସପକ୍ଷହସ୍ତଃ

ସର୍ପଶୀର୍ଷକରେ ସମ୍ୟକ୍ କନିଷ୍ଠା ପ୍ରସୃତା ଯଦା ॥୧୫୭॥
ହଂସପକ୍ଷଃ କରଃ ସୋଽୟଂ ତନ୍ନିରୂପଣମୁଚ୍ୟତେ ।

ସର୍ପଶୀର୍ଷକରରେ ଯଦି କନିଷ୍ଠା କଞ୍ଚିତ୍ ପ୍ରସାରିତ ହୁଏ ତାହା ହଂସପକ୍ଷକର ହୁଏ ।

## ବିନିଯୋଗଃ

ଷଟ୍‌ସଂଖ୍ୟାୟାଂ ସେତୁବନ୍ଧେ ନଖରେଖାଙ୍କନେ ତଥା ॥୧୫୮॥
ପିଧାନେ ହଂସପକ୍ଷୋଽୟଂ କଥିତୋ ଭରତାଗମେ ।

ଛଅସଂଖ୍ୟା, ସେତୁବନ୍ଧ, ନଖଦ୍ୱାରା ରେଖାଙ୍କନ ଓ ଢାଙ୍କୁଣୀ ଅର୍ଥରେ ହଂସପକ୍ଷ କରର ବ୍ୟବହାର ହୁଏ ବୋଲି ନାଟ୍ୟଶାସ୍ତ୍ରଗୁଡ଼ିକରେ କଥିତ ହୋଇଛି ।

## ସନ୍ଦଂଶହସ୍ତଃ

ପୁନଃ ପୁନଃ ପଦ୍ମକୋଶଃ ସଶ୍ଲିଷ୍ଟୋ ବିରଳୋ ଯଦା ॥୧୫୯॥
ସନ୍ଦଂଶାଭିଧହସ୍ତୋଽୟଂ କୀର୍ତ୍ତିତୋ ନୃତ୍ୟକୋବିଦୈଃ ।

ପଦ୍ମକୋଶହସ୍ତରେ ଅଙ୍ଗୁଳିଗୁଡ଼ିକୁ ବାରମ୍ବାର କୁଞ୍ଚିତ କରି ବିକ୍ଷିପ୍ତ କଲେ ତାହା ସନ୍ଦଂଶହସ୍ତଃ ହୁଏ ।

## ବିନିଯୋଗଃ

ଉଦରେ ବଳିଦାନେ ଚ ବ୍ରଣେ କୀଟେ ମହାଭୟେ ॥୧୬୦॥
ଅର୍ଚ୍ଚନେ ପଞ୍ଚସଂଖ୍ୟାୟାଂ ସଂଦଂଶାଖ୍ୟୋ ନିଯୁଜ୍ୟତେ ।

ଉଦର, ବଳଦାନ; ବ୍ରଣ, କାଠ, ମହାଭୟ, ଅର୍ଚ୍ଚନା, ପାଞ୍ଚସଂଖ୍ୟା ଅର୍ଥରେ ସନ୍ଦଂଶହସ୍ତର ଯୋଜନା ହୁଏ ।

## ମୁକୁଳହସ୍ତଃ

ଅଂଗୁଳୀପଞ୍ଚକଞ୍ଚୈବ ମେଳୟିତ୍ୱା ପ୍ରଦର୍ଶନେ ॥୧୬୧॥
ମୁକୁଳାଭିଧହସ୍ତୋଽୟଂ କୀର୍ତ୍ତ୍ୟତେ ଭରତାଗମେ ।

ପାଞ୍ଚଆଙ୍ଗୁଳିକୁ ମିଳାଇ ପ୍ରଦର୍ଶନ କଲେ ତାହା ମୁକୁଳହସ୍ତ ହୁଏ ବୋଲି ନାଟ୍ୟଶାସ୍ତ୍ରଗୁଡ଼ିକରେ କଥିତ ଅଛି ।

## ବିନିଯୋଗଃ

କୁମୁଦେ ଭୋଜନେ ପଞ୍ଚବାଣେ ମୁଦ୍ରାଦିଧାରଣେ ॥୧୬୨॥
ନାଭୌ ଚ କଦଳୀପୁଷ୍ପେ ଯୁଜ୍ୟତେ ମୁକୁଳଃ କରଃ ।

କୁମୁଦ (କଇଁଫୁଲ), ଭୋଜନ, ପଞ୍ଚବାଣ, ମୁଦ୍ରାଧାରଣ, ନାଭି ଓ କଦଳୀ ଭଣ୍ଡା ଅର୍ଥରେ ମୁକୁଳହସ୍ତର ଯୋଜନା ହୁଏ ।

## ତାମ୍ରଚୂଡ଼ହସ୍ତଃ

ମୁକୁଳେ ତାମ୍ରଚୂଡ଼ଃ ସ୍ୟାତ୍ତର୍ଜ୍ଜନୀ ବଙ୍କିତା ଯଦି ॥୧୬୩॥

ମୁକୁଳହସ୍ତରେ ତର୍ଜ୍ଜନୀକୁ ବଙ୍କ କଲେ ତାହା ତାମ୍ରଚୂଡ଼ହସ୍ତ ହୁଏ ।

## ବିନିଯୋଗଃ

କୁକ୍କୁଟାଦୌ ବକେ କାକେ ଓଷ୍ଟ୍ରେ ବତ୍ସେ ଚ ଲେଖନେ ।
ଯୁଜ୍ୟତେ ତାମ୍ରଚୂଡ଼ାଖ୍ୟଃ କରୋ ଭରତବେଦିଭିଃ ॥୧୬୪॥

କୁକୁଡ଼ା ପ୍ରଭୃତି, ବଗ, କୁଆ, ଓଟ, ବାଛୁରି ଓ ଲେଖିବା ଅର୍ଥରେ ନାଟ୍ୟଶାସ୍ତ୍ରଜ୍ଞଗଣ ତାମ୍ରଚୂଡ଼ହସ୍ତ ପ୍ରୟୋଗ କରନ୍ତି ।

## ତ୍ରିଶୂଳହସ୍ତଃ

ଆକୁଞ୍ଚିତାଙ୍ଗୁଷ୍ଠକନିଷ୍ଠ ତ୍ରିଶୂଳକଃ ।

କନିଷ୍ଠ ଓ ଅଂଗୁଷ୍ଠ କୁଞ୍ଚିତ ହୋଇ ଯୁକ୍ତ ହେଲେ ତ୍ରିଶୂଳ-ହସ୍ତ ହୁଏ ।

## ବିନିଯୋଗଃ

ବିଲ୍ୱପତ୍ରେ ତ୍ରିଭିଯୁକ୍ତେ ତ୍ରିଶୂଳକର ଈରିତଃ ।।୧୬୫।।

ବେଲପତ୍ର, ତିନ ଅର୍ଥରେ ତ୍ରିଶୂଳକରର ବିନିଯୋଗ ହୁଏ ।

## ବ୍ୟାଘ୍ରହସ୍ତଃ

କନିଷ୍ଠାଙ୍ଗୁଷ୍ଠନମନେ ମୃଗଶୀର୍ଷକରେ ତଥା ।
ବ୍ୟାଘ୍ରହସ୍ତଃ ସ ବିଜ୍ଞେୟୋ ଭରତାଗମକୋବିଦୈଃ ।।୧୬୬।।

ମୃଗଶୀର୍ଷହସ୍ତରେ କନିଷ୍ଠ ଓ ଅଙ୍ଗୁଷ୍ଠକୁ ନମ୍ରିତକଲେ ତାହାକୁ ନାଟ୍ୟଶାସ୍ତ୍ର ବିଶେଷଜ୍ଞଗଣ ବ୍ୟାଘ୍ରହସ୍ତ କହନ୍ତି ।

## ବିନିଯୋଗଃ

ବ୍ୟାଘ୍ରେ ଭେକେ ମର୍କଟେ ଚ ଶୁକ୍ତୌ ସଂଯୁଜ୍ୟତେ କରଃ ।

ବାଘ, ବେଙ୍ଗ, ମାଙ୍କଡ଼, ଶାମୁକା ଅର୍ଥରେ ବ୍ୟାଘ୍ରହସ୍ତର ଯୋଜନା ହୁଏ ।

## ଅର୍ଦ୍ଧସୂଚୀହସ୍ତଃ

କପିତ୍ଥେ ତର୍ଜ୍ଜନୀ ଊର୍ଦ୍ଧ୍ୱ ସାରଣେ ତ୍ୱର୍ଦ୍ଧସୂଚକଃ ।।୧୬୭।।

କପିତ୍ଥହସ୍ତରେ ତର୍ଜ୍ଜନୀ ଊର୍ଦ୍ଧ୍ୱକୁ ପ୍ରସାରିତ ହେଲେ ଅର୍ଦ୍ଧସୂଚୀହସ୍ତ ହୁଏ ।

## ବର୍ନିଯୋଗଃ

ଅଙ୍କୁରେ ପକ୍ଷୀଶାବାଦୌ ବୃହଦ୍‌ଭକାଣ୍ଟେ ନିଯୁଜ୍ୟତେ ।

ଅଙ୍କୁର, ପକ୍ଷୀଶାବକ ପ୍ରଭୃତି ଓ ବୃହଦ୍‌ଭକାଷ୍ଟ ଅର୍ଥରେ ପ୍ରଯୁକ୍ତ ହୁଏ ।

## କଟକହସ୍ତଃ

ସ୍ୱନ୍ଦଂଶେହସ୍ୟୋର୍ଦ୍ଧ୍ୱଭାଗେ ତୁ ମଧ୍ୟମାନାମିକାନ୍ୱିତୌ ।।୧୬୮।।
... ... ... ...କଟକୋ ହସ୍ତ ଉଚ୍ୟତେ ।

ସନ୍ଦଂଶହସ୍ତର ଊର୍ଦ୍ଧ୍ୱଭାଗରେ ମଧ୍ୟମା ଅନାମିକାକୁ ଯୋଗ-କଲେ ତାହା କଟକହସ୍ତ ହୁଏ ।

## ବିନିଯୋଗଃ

ଏତସ୍ୟ ବିନିଯୋଗସ୍ତୁ ... ଦର୍ଶନେ ।।୧୬୯।।
ଆହ୍ୱାନଶ୍ଚବଚଳନେ କଟକୋହସ୍ତ ଯୁଜ୍ୟତେ ।

... ... ...ଦର୍ଶନ, ଆହ୍ୱାନ କରିବା ଓ ଚଳନ ଅର୍ଥରେ କଟକହସ୍ତ ପ୍ରଯୁକ୍ତ ହୁଏ ।

## ପଲ୍ଲିହସ୍ତଃ

ମୟୂରେ ତର୍ଜ୍ଜନୀପୃଷ୍ଠେ ମଧ୍ୟମେନ ଯୁତୋ ଯଦି ।।୧୭୦।।
ପଲ୍ଲିହସ୍ତଃ ସ ବିଜ୍ଞେୟଃ ପଲ୍ଲ୍ୟର୍ଥେ ବିନିଯୁଜ୍ୟତେ ।

ଯଦି ମୟୂର ହସ୍ତରେ ତର୍ଜ୍ଜନୀ ପୃଷ୍ଠରେ ମଧ୍ୟମାକୁ ଯୋଗ କରାଯାଏ ତାହାକୁ ପଲ୍ଲୀହସ୍ତ କହନ୍ତି । ପଲ୍ଲୀ ଅର୍ଥରେ ଏହାକୁ ବିନିଯୋଗ କରାଯାଏ ।

ଅଭିନୟ ବଶାଦେଶାଂ ହସ୍ତୁତତ୍ତ୍ୱଂ ପ୍ରକୀର୍ତ୍ତିତମ୍ ।।୧୭୧।।
ମାର୍ଗପ୍ରଦର୍ଶନଂ ତେଷାଂ କ୍ରମାଲ୍ଲକ୍ଷ୍ୟାନୁସାରତଃ ।

ଅଭିନୟବଶତଃ ଏଗୁଡ଼ିକର ସଂଯୁକ୍ତତ୍ତ୍ୱ କୀର୍ତ୍ତିତ ହୋଇଛି । ଲକ୍ଷ୍ୟାନୁସାରେ ସେଗୁଡ଼ିକର ମାର୍ଗ ପ୍ରଦର୍ଶିତ ହେଉଅଛି ।

## ସଂଯୁକ୍ତହସ୍ତାଃ

ଅଞ୍ଜଳିଶ୍ଚ କପୋତଶ୍ଚ କର୍କଟଃ ସ୍ୱସ୍ତିକସ୍ତଥା ।। ୧୭୨ ।।

ଡୋଲାହସ୍ତଃ ପୁଷ୍ପପୁଟ ଉତ୍ସଙ୍ଗଃ ଶିବଲିଙ୍ଗକଃ ।
କଟକାବର୍ଦ୍ଧନଶ୍ଚୈବ କର୍ତ୍ତରୀସ୍ୱସ୍ତିକସ୍ତଥା ।।୧୭୩।।

ଶକଟଂ ଶଙ୍ଖଚକ୍ରେ ଚ ସମ୍ପୁଟଃ ପାଶକୀଲକୌ ।
ମତ୍ସ୍ୟଃ କୂର୍ମୋ ବରାହଶ୍ଚ ଗରୁଡ଼ୋ ନାଗବନ୍ଧକଃ ।।୧୭୪।।

ଖଟ୍ୱା ଭେରୁଣ୍ଡ ଇତ୍ୟେତେ ସଂଖ୍ୟାତା ସଂଯୁତା କରାଃ ।
ତ୍ରୟୋବିଂଶତିରଶ୍ଚୁକ୍ତାଃ ପୂର୍ବଗୈର୍ଭରତାଦିଭିଃ ।।୧୭୫।।

ଅଞ୍ଜଳି, କପୋତ, କର୍କଟ, ସ୍ୱସ୍ତିକ, ଡୋଲାହସ୍ତ, ପୁଷ୍ପପୁଟ, ଉତ୍ସଙ୍ଗ, ଶିବଲିଙ୍ଗ, କଟକାବର୍ଦ୍ଧନ, କର୍ତ୍ତରୀସ୍ୱସ୍ତିକ, ଶକଟ, ଶଙ୍ଖ, ଚକ୍ର, ସମ୍ପୁଟ, ପାଶ, କୀଲକ, ମତ୍ସ୍ୟ, କୂର୍ମ, ବରାହ, ଗରୁଡ଼, ନାଗବନ୍ଧ, ଖଟ୍ୱା ଏବଂ ଭେରୁଣ୍ଡ—ଏହି ୨୩ ପ୍ରକାର ସଂଯୁକ୍ତହସ୍ତ ପୂର୍ବନାଟ୍ୟଶାସ୍ତ୍ରଜ୍ଞଙ୍କଦ୍ୱାରା କୁହାଯାଇଅଛି ।

### ଅଞ୍ଜଳିହସ୍ତଃ

ପତାକାତଳୟୋର୍ଯୋଗାଦଞ୍ଜଳିଃ କର ଇରିତଃ ।

ଦୁଇପତାକା କରତଳକୁ ସଂଯୋଗ କଲେ ତାହା ଅଞ୍ଜଳି-ହସ୍ତ ହୁଏ ।

### ବିନିଯୋଗଃ

ଦେବତାଗୁରୁବିପ୍ରାଣାଂ ନମସ୍କାରେଷ୍ୱନୁକ୍ରମାତ୍ ।।୧୭୬।।
କାର୍ଯ୍ୟଃ ଶିରୋମୁଖୋରସ୍ଥୋ ବିନିଯୋଗେଽଞ୍ଜଳିର୍ବୁଧୈଃ ।

ଦେବତା, ଗୁରୁ, ଓ ବ୍ରାହ୍ମଣମାନଙ୍କୁ ନମସ୍କାର କରିବା ଅର୍ଥରେ ଅଞ୍ଜଳୀହସ୍ତ କ୍ରମାନ୍ୱୟରେ ଶିର ମୁଖ, ବକ୍ଷସ୍ଥାନରେ କ୍ଷ୍ମାମାଗଣ ବନ୍ଦଯୋଗ କରନ୍ତି ।

## କପୋତହସ୍ତଃ

କପୋତୋଽସୌ କରେ ଯତ୍ର ଶ୍ଲିଷ୍ଟାଽମୂଳାଗ୍ରପାର୍ଶ୍ୱକଃ ।।୧୭୭।।

ସେହି (ପତାକା) କର ପରସ୍ପରକୁ ମୂଳ, ଅଗ୍ରଭାଗ ଓ ପାର୍ଶ୍ୱଦେଶରେ ଯୋଗ କଲେ ତାହା କପୋତହସ୍ତ ହୁଏ ।

## ବନ୍ଦଯୋଗଃ

ପ୍ରାଣାମେ ଗୁରୁସମ୍ଭାଷେ ବିନୟାଙ୍ଗୀକୃତେଷ୍ୱୟମ୍ ।

ପ୍ରଣାମ କରିବାରେ, ଗୁରୁସହିତ ସମ୍ଭାଷଣ କରିବାରେ ବିନୟ ଭାବରେ ଅଙ୍ଗୀକାର କରିବା ଅର୍ଥରେ ଏହାର ବନ୍ଦଯୋଗ ହୁଏ ।

## କର୍କଟହସ୍ତଃ

ଅନ୍ୟୋନ୍ୟସ୍ୟାନ୍ତରେ ଯତ୍ରାଙ୍ଗୁଲ୍ୟୋ ନିଃସୃତ୍ୟ ହସ୍ତୟୋଃ ।।୧୭୮।।
ଅନ୍ତର୍ବହିର୍ବା ବର୍ତ୍ତନ୍ତେ କର୍କଟଃ ସୋଽଭିଧୀୟତେ ।

ଉଭୟ ହସ୍ତର ଅଙ୍ଗୁଳିଗୁଡ଼ିକ ଯଦି ପରସ୍ପର ଫାଙ୍କଦେଇ ଭିତରେ ବା ବାହାରେ ରହନ୍ତି ତାହା କର୍କଟହସ୍ତ ହୁଏ ।

## ବନିଯୋଗଃ

ସମୂହାଗମନେ ତୁନ୍ଦଦର୍ଶନେ ଶଙ୍ଖପୂରଣେ ।।୧୭୯।।
ଅଙ୍ଗାନାଂ ମୋଟନେ ଶାଖୋନ୍ନମନେ ଚ ନିୟୁଜ୍ୟତେ ।

ସମୂହର ଆଗମନ, ପେଟଦେଖାଇବା, ଶଙ୍ଖ ଫୁଙ୍କିବା, ଦେହ ମୋଡ଼ିବା, ଗଛଡାଳ ତଳକୁ ଭିଡ଼ିବା ଅର୍ଥରେ ଏହି ହସ୍ତର ଯୋଜନା ହୁଏ ।

# ସଂଯୁତ ହସ୍ତ



୧ । ଅଞ୍ଜଳି



୨ । କପୋତ



୩ । କର୍କଟ



୪ । ସ୍ୱସ୍ତିକ



୫ । ପୁଷ୍ପପୁଟ



୬ । ଶିବଲିଙ୍ଗ



୭ । କଟକା ବର୍ଦ୍ଧନ



୮ । କର୍ତ୍ତରୀ ସ୍ୱସ୍ତିକ



୯ । ଶକଟ



୧୦ । ଶଙ୍ଖ



୧୧ । ଚକ୍ର



୧୨ । ସମ୍ପୁଟ



୧୬ । କୂର୍ମ



୧୩ । ପାଶ



୧୪ । କୀଲକ



୧୫ । ମତ୍ସ୍ୟ

## ସ୍ୱସ୍ତିକହସ୍ତଃ

ପତାକୟୋଃ ସନ୍ନିଯୁକ୍ତଃ କରୟୋର୍ମଣିବନ୍ଧୟୋଃ ।।୧୮୦।।
ସଂଯୋଗେନ ସ୍ୱସ୍ତିକାଖ୍ୟୋ ମକରେ ବିନିଯୁଜ୍ୟତେ ।

ପତାକାହସ୍ତ ଦ୍ୱୟକୁ ବିପରୀତ ଭାବରେ ମଣିବନ୍ଧରେ ଯୋଗକଲେ ତାହା ସ୍ୱସ୍ତିକହସ୍ତ ହୁଏ । ମଗର ଅର୍ଥରେ ଏହାର ବିନିଯୋଗ ହୁଏ ।

## ଡୋଲ୍‌ହସ୍ତଃ

ପତାକ ଉରୁଦେଶସ୍ଥେ ଡୋଲ୍‌ହସ୍ତାପୁମିଷ୍ୟତେ ।।୧୮୧।।

ଉରୁଦେଶରେ ପତାକାହସ୍ତକୁ ସ୍ଥାପନ କଲେ ତାହା ଡୋଲ୍‌ହସ୍ତ ହୁଏ ।

## ବିନିଯୋଗଃ

ନାଟ୍ୟାରମ୍ଭେ ପ୍ରୟୋକ୍ତବ୍ୟ ଇତି ନାଟ୍ୟବିଦୋ ବିଦୁଃ ।

ନାଟ୍ୟାରମ୍ଭରେ ଏହା ପ୍ରଯୋଜ୍ୟ ବୋଲି ନାଟ୍ୟବିଦ୍‌ମାନେ ଜାଣନ୍ତି ।

## ପୁଷ୍ପପୁଟହସ୍ତଃ

ସଂଶ୍ଳିଷ୍ଟକରୟୋଃ ସର୍ପଶୀର୍ଷଃ ପୁଷ୍ପପୁଟଃ କରଃ ।।୧୮୨।।

ଦୁଇ ସର୍ପଶୀର୍ଷ ହସ୍ତକୁ ପାର୍ଶ୍ୱଦେଶରେ ଯୋଗକଲେ ତାହା ପୁଷ୍ପପୁଟହସ୍ତ ହୁଏ ।

## ବିନିଯୋଗଃ

ନୀରାଜନାବିଧୌ ବାରିଫଳାଦିଗ୍ରହଣେଽପି ଚ ।
ସନ୍ଧ୍ୟାୟାମର୍ଘ୍ୟଦାନେ ଚ ମନ୍ତ୍ରପୁଷ୍ପେ ଚ ଯୁଜ୍ୟତେ ।।୧୮୩।।

ଆରମ୍ଭକରିବା, ଜଳ ଓ ଫଳଆଦି ଗ୍ରହଣ କରିବା, ସନ୍ଧ୍ୟାରେ ତର୍ପଣ କରିବା ଓ ପୁଷ୍ପାଞ୍ଜଳି ଦେବା ଅର୍ଥରେ ପୁଷ୍ପପୁଟ ହସ୍ତର ବ୍ୟବହାର ହୁଏ ।

## ଉତ୍ସଙ୍ଗହସ୍ତଃ

ଅନ୍ୟୋନ୍ୟବାହୁଦେଶସ୍ଥୌ ମୃଗଶୀର୍ଷକରୌ ଯଦା ।
ଉତ୍ସଙ୍ଗହସ୍ତଃ ସ ଜ୍ଞେୟୋ ଭରତାଗମବେଦିଭିଃ ॥୧୮୪॥

ଦୁଇ ମୃଗଶୀର୍ଷକର ଯଦି ବିପରୀତ ବାହୁଦେଶରେ ସ୍ଥାପନ କରାଯାଏ ତାହା ଭରତଶାସ୍ତ୍ରବିଦ୍‌ଗଣଙ୍କ ମଧ୍ୟରେ ଉତ୍ସଙ୍ଗହସ୍ତ ନାମରେ କଥିତ ।

## ବିନିଯୋଗଃ

ଆଲିଙ୍ଗନେ ଚଲଜ୍ଜାୟାମଙ୍ଗଦାଦି ପ୍ରଦର୍ଶନେ ।
ବାଲାନାଂ ଶିକ୍ଷଣେ ଚୈବମୁତ୍ସଙ୍ଗୋ ଯୁଜ୍ୟତେ କରଃ ॥୧୮୫॥

ଆଲିଙ୍ଗନ କରିବା, ଲଜ୍ଜାଭିବ, ଅଙ୍ଗଦ (ବାଜୁବନ୍ଧ) ପ୍ରଦର୍ଶନ, ଶିଶୁଙ୍କୁ ଶିକ୍ଷାଦେବାରେ ଉତ୍ସଙ୍ଗ ହସ୍ତର ବିନିଯୋଗ ହୁଏ ।

## ଶିବଲିଙ୍ଗହସ୍ତଃ

ବାମେଽର୍ଦ୍ଧଚନ୍ଦ୍ରେ ବିନ୍ୟସ୍ତଃ ଶିଖରଃ ଶିବଲିଙ୍ଗକଃ ।

ବାମହସ୍ତରେ ଅର୍ଦ୍ଧଚନ୍ଦ୍ର ଧାରଣକରି ତଦୁପରେ ଶିଖରହସ୍ତ ବିନ୍ୟାସ କଲେ ତାହା ଶିବଲିଙ୍ଗହସ୍ତ ହୁଏ ।

## ବିନିଯୋଗଃ

ବିନିଯୋଗସ୍ତୁ ତସ୍ୟୈବ ଶିବଲିଙ୍ଗସ୍ୟ ଦର୍ଶନେ ॥୧୮୬॥
ଶିବଲିଙ୍ଗ ଦର୍ଶନରେ ଏହାର ବିନିଯୋଗ ହୁଏ ।

## କଟକାବର୍ଦ୍ଧନହସ୍ତଃ

କଟକାମୁଖୟୋଃ ପାଣ୍ୟୋଃ ସ୍ୱସ୍ତିକୋ ମଣିବନ୍ଧୟୋଃ ।
କଟକାବର୍ଦ୍ଧନାଖ୍ୟଃ ସ୍ୟାଦଭି ନାଟ୍ୟବଦୋ ବଦୁଃ ।।୮୭।।

କଟକାମୁଖ ହସ୍ତଦ୍ୱୟ ମଣିବନ୍ଧରେ ସ୍ୱସ୍ତିକାକାରରେ ରହିଲେ ତାହା କଟକାବର୍ଦ୍ଧନ ହସ୍ତ ହୁଏ ବୋଲି ନାଟ୍ୟବଦ୍‌ଗଣ ଜାଣନ୍ତି ।

## ବିନିଯୋଗଃ

ପଟ୍ଟାଭିଷେକେ ପୂଜାୟାଂ ବିବାହାଦିଷୁ ଯୁଜ୍ୟତେ ।

ରାଜ୍ୟାଭିଷେକ, ପୂଜା ଓ ବିବାହ ଅର୍ଥରେ ଏହି ହସ୍ତର ପ୍ରୟୋଗ ହୁଏ ।

## କର୍ତ୍ତରୀସ୍ୱସ୍ତିକହସ୍ତଃ

କର୍ତ୍ତରିସ୍ୱସ୍ତିକାକାରା କର୍ତ୍ତରୀସ୍ୱସ୍ତିକୋ ଭବେତ୍ ।।୮୮।।

କର୍ତ୍ତରୀମୁଖ ହସ୍ତଦ୍ୱୟ ସ୍ୱସ୍ତିକାକାରରେ ରହିଲେ ତାହା କର୍ତ୍ତରୀସ୍ୱସ୍ତିକ ହସ୍ତ ହୁଏ ।

## ବିନିଯୋଗଃ

ଶାଖାସୁ ଗିରି ଶିଖରେ ବୃକ୍ଷେଷୁ ଚ ନିଯୁଜ୍ୟତେ ।

ବୃକ୍ଷର ଶାଖା, ଗିରି ଶିଖର ଓ ବୃକ୍ଷ ଅର୍ଥରେ ଏହାର ପ୍ରୟୋଗ ହୁଏ ।

## ଶକଟହସ୍ତଃ

ଭ୍ରମରେ ମଧ୍ୟମାଙ୍ଗୁଷ୍ଠପ୍ରସାରିତ୍ତକଟୋ ଭବେତ୍ ।।୮୯।।

ଭ୍ରମର ହସ୍ତରେ ମଧ୍ୟମା ଓ ଅଙ୍ଗୁଷ୍ଠାକୁ ପ୍ରସାର କଲେ ତାହା ଶକଟ ହସ୍ତ ହୁଏ ।

## ବିନିଯୋଗଃ

ରାକ୍ଷସାଭିନୟେ ପ୍ରାୟଃ ଶକଟୋ ବିନିଯୁଜ୍ୟତେ ।

ପ୍ରାୟ ରାକ୍ଷସାଭିନୟରେ ଶକଟ ହସ୍ତର ବିନିଯୋଗ ହୁଏ ।

## ଶଙ୍ଖହସ୍ତଃ

ଶିଖରାନ୍ତର୍ଗତାଙ୍ଗୁଷ୍ଠ ଇତରାଙ୍ଗୁଷ୍ଠସଙ୍ଗତଃ ।।୧୯୦।।
ତର୍ଜ୍ଜନ୍ୟା ଯୁତ ଅଶ୍ଲିଷ୍ଟଃ ଶଙ୍ଖହସ୍ତଃ ପ୍ରକୀର୍ତ୍ତିତଃ ।

ଶିଖରହସ୍ତ ଅନ୍ତର୍ଗତ ଅଙ୍ଗୁଷ୍ଠାର ସହିତ ଅପର ଅଙ୍ଗୁଷ୍ଠି ସମ୍ମିଳିତ ହୋଇ ତର୍ଜ୍ଜନୀ ଦ୍ୱାରା ଯୁକ୍ତ ଓ ଅଶ୍ଲିଷ୍ଟ ହେଲେ ତାହା ଶଙ୍ଖହସ୍ତ ହୁଏ ।

## ବିନିଯୋଗଃ

ଶଙ୍ଖାଦିଷୁ ପ୍ରଯୋକ୍ତବ୍ୟୋଽୟମିତ୍ୟାହୁର୍ଭରତାଦୟଃ ।।୧୯୧।।

ଶଙ୍ଖ ଇତ୍ୟାଦି ଅର୍ଥରେ ଏହାର ପ୍ରୟୋଗ ହୁଏ ବୋଲି ଭରତାଦି କହିଛନ୍ତି ।

## ଚନ୍ଦ୍ରହସ୍ତଃ

ଯଦାର୍ଦ୍ଧଚନ୍ଦ୍ରୌ ତିର୍ଯ୍ୟଞ୍ଚାବନ୍ୟୋନ୍ୟତଳସଂସ୍ପୃଶୌ ।
୪ ଚନ୍ଦ୍ରହସ୍ତଃ ସ ବିଜ୍ଞେୟଶ୍ଚନ୍ଦ୍ରାର୍ଥେ ବିନିଯୁଜ୍ୟତେ ।।୧୯୨।।

ଯେତେବେଳେ ଦୁଇ ଅର୍ଦ୍ଧଚନ୍ଦ୍ର ହସ୍ତ ତିର୍ଯ୍ୟକ୍‌ଭାବରେ ପରସ୍ପରର କରତଳକୁ ସ୍ପର୍ଶ କରେ, ତାହା ଚନ୍ଦ୍ରହସ୍ତ ବୋଲି ଜ୍ଞାତ । ଚନ୍ଦ୍ର ଅର୍ଥରେ ଏହାର ପ୍ରଯୋଜନା ହୁଏ ।

## ସମ୍ପୁଟ ହସ୍ତଃ

କୁଞ୍ଚିତାଙ୍ଗୁଳପୃଷ୍ଠେନ ପ୍ରୋକ୍ତଃ ସମ୍ପୁଟହସ୍ତକଃ ।

ଚନ୍ଦହସ୍ତରେ ଅଙ୍ଗୁଳିଗୁଡ଼ିକ କୁଞ୍ଚିତ ହେଲେ ତାହା ସମ୍ପୁଟ ହସ୍ତ ହୁଏ ।

## ବିନିଯୋଗଃ

ବସ୍ତ୍ୱାଚ୍ଛାଦେ ସମ୍ପୁଟେ ଚ ସମ୍ପୁଟଃ କର ଇରିତଃ ।।୧୯୩।।

ବସ୍ତୁକୁ ଆଚ୍ଛାଦନ କରିବା ଏବଂ ଫରୁଆ ଅର୍ଥରେ ସମ୍ପୁଟ ହସ୍ତର ବିନିଯୋଗ ହୁଏ ।

## ପାଶହସ୍ତଃ

ସୂଚ୍ୟାଂ ନକୁଞ୍ଚିତେ ଶ୍ଳିଷ୍ଟେ ତର୍ଜନ୍ୟୌ ପାଶ ଈରିତଃ ।

ସୂଚୀହସ୍ତ ମୁଦ୍ରାରେ ତର୍ଜନୀ ଦ୍ୱୟକୁ କୁଞ୍ଚିତ କରି ବିପରୀତ ଭାବରେ ଶ୍ଳିଷ୍ଟକଲେ ତାହା ପାଶହସ୍ତ କଥିତ ହୁଏ ।

## ବିନିଯୋଗଃ

ଅନ୍ୟୋନ୍ୟକଳହେ ପାଶେ ଶୃଙ୍ଖଳାୟାଂ ନିଯୁଜ୍ୟତେ ।।୧୯୪।।

ପରସ୍ପର କଳହ, ଫାଶ ଓ ଶୃଙ୍ଖଳ ଅର୍ଥରେ ଏହାର ବିନିଯୋଗ ହୁଏ ।

## କୀଳକ ହସ୍ତଃ

କନିଷ୍ଠେ କୁଞ୍ଚିତେ ଶ୍ଳିଷ୍ଟେ ମୃଗଶୀର୍ଷସ୍ଥ କୀଳକଃ ।

ଉଭୟ ମୃଗଶୀର୍ଷହସ୍ତରେ କନିଷ୍ଠାଙ୍ଗୁଳିଗୁଡ଼ିକୁ କୁଞ୍ଚିତ କରି ଯୋଗକଲେ ତାହା କୀଳକହସ୍ତ ହୁଏ ।

## ବନ୍ଦଯୋଗଃ

ସ୍ନେହେ ନର୍ମାନୁଲାପେ ଚ କାଳକୋ ବନ୍ଦ୍ୟୁଜ୍ୟତେ ।।୧୯୫।।

ସ୍ନେହ, ରହସ୍ୟ ବା ପ୍ରେମମୂଳକ କଥାବାର୍ତ୍ତା ଅର୍ଥରେ କାଳକ ହସ୍ତର ପ୍ରୟୋଗ ହୁଏ ।

## ମତ୍ସ୍ୟହସ୍ତଃ

କରପୃଷ୍ଠୋପରି ନ୍ୟସ୍ତୋ ଯଦି ହସ୍ତ-ସ୍ତ୍ୱଧୋମୁଖଃ ।
କଞ୍ଚିତ୍ପ୍ରସାରିତାଙ୍ଗୁଷ୍ଠ କନିଷ୍ଠା ମତ୍ସ୍ୟନାମକଃ ।।୧୯୬।।

କରପୃଷ୍ଠ ଉପରେ ଅନ୍ୟ ଏକ କର ଅଧୋମୁଖ ଭାବରେ ନ୍ୟାସକରି ଅଙ୍ଗୁଷ୍ଠ ଓ କନିଷ୍ଠାକୁ କିଞ୍ଚିତ୍ ପ୍ରସାରକଲେ ତାହା ମତ୍ସ୍ୟହସ୍ତ ହୁଏ ।

## ବନ୍ଦଯୋଗଃ

ଏତସ୍ୟବନ୍ଦଯୋଗସ୍ତୁ ସମ୍ମତୋ ମତ୍ସ୍ୟଦର୍ଶନେ ।

ମତ୍ସ୍ୟଦର୍ଶନରେ ଏହାର ବନ୍ଦଯୋଗ ହୁଏ ।

## କୂର୍ମ୍ମ ହସ୍ତଃ

କୁଞ୍ଚିତାଗ୍ରାଙ୍ଗୁଳିଶ୍ଚନ୍ଦ୍ରେ ତ୍ୟକ୍ତାଙ୍ଗୁଷ୍ଠ କନିଷ୍ଠକଃ ।।୧୯୭।।
—କୂର୍ମ୍ମ ହସ୍ତଃ ସ ବକ୍ତ୍ରେୟଃ କୂର୍ମ୍ମାର୍ଥେ ବନ୍ଦ୍ୟୁଜ୍ୟତେ ।

ଚନ୍ଦ୍ରହସ୍ତରେ ଅଙ୍ଗୁଷ୍ଠ ଓ କନିଷ୍ଠାକୁ ଛାଡ଼ି ଅନ୍ୟ ଅଙ୍ଗୁଳି-ଗୁଡ଼ିକର ଅଗ୍ରଭାଗକୁ କୁଞ୍ଚିତ କଲେ ତାହା କୂର୍ମ୍ମ ହସ୍ତ ହୁଏ । ଏହା କୂର୍ମହସ୍ତରେ ପ୍ରୟୋଗ ହୁଏ ।

## ବରାହ ହସ୍ତଃ

ମୃଗଶୀର୍ଷେ ଭୂନ୍ୟତରେ ସ୍ୱୋପର୍ଯ୍ୟେକଃ ସ୍ଥିତେ ଯଦା ।।୧୯୮।।
କନିଷ୍ଠାଙ୍ଗୁଷ୍ଠୟୋର୍ଯୋଗାଦ୍ ବରାହକର ଇଷ୍ୟତେ ।

ମୃଗଶୀର୍ଷହସ୍ତ ଉପରେ ମୃଗଶୀର୍ଷ ହସ୍ତ ସ୍ଥାପନ କରି କନିଷ୍ଠା ଓ ଅଙ୍ଗୁଷ୍ଠାକୁ ଯୋଗକଲେ ତାହା ବରାହ କର ହୁଏ ।

## ବନିଯୋଗଃ

ଏତସ୍ୟ ବିନିଯୋଗଃ ସ୍ୟାଦ୍‌ବରାହାର୍ଥ ପ୍ରଦର୍ଶନେ ॥୧୯୯॥

ବରାହ ଅର୍ଥରେ ଏହାର ବିନିଯୋଗ ହୁଏ ।

## ଗରୁଡ଼ ହସ୍ତଃ

ତିର୍ଯ୍ୟକ୍‌ତଳସ୍ଥିତାବର୍ଦ୍ଧଚନ୍ଦ୍ରାବଙ୍ଗୁଷ୍ଠ ଯୋଗତଃ ।
ଗରୁଡ଼ହସ୍ତ ଇତ୍ୟାହୁର୍ଗରୁଡ଼ାର୍ଥେ ନିଯୁଜ୍ୟତେ ।

ଉଭୟହସ୍ତରେ ଅର୍ଦ୍ଧଚନ୍ଦ୍ର ହସ୍ତ ତିର୍ଯ୍ୟକ୍‌ଭାବରେ ଧାରଣକରି ଉଭୟ ଅଙ୍ଗୁଷ୍ଠାକୁ ଯୋଗକଲେ ତାହା ଗରୁଡ଼ ହସ୍ତହୁଏ । ଏହାର ଗରୁଡ଼ ଅର୍ଥରେ ବିନିଯୋଗ ହୁଏ ।

## ନାଗବନ୍ଧ ହସ୍ତଃ

ସର୍ପଶୀର୍ଷସ୍ୱସ୍ତିକଞ୍ଚ ନାଗବନ୍ଧ ଇତୀରିତ ।

ସର୍ପଶୀର୍ଷ ହସ୍ତଦ୍ୱୟ ସ୍ୱସ୍ତିକାକାରରେ ରହିଲେ ତାହା ନାଗବନ୍ଧ ହସ୍ତ ହୁଏ ।

## ବିନିଯୋଗଃ

ଏତସ୍ୟ ବିନିଯୋଗସ୍ତୁ ନାଗବନ୍ଧେ ହି ସମ୍ମତଃ ॥୨୦୧॥

ନାଗବନ୍ଧ ଅର୍ଥରେ ଏହାର ବିନିଯୋଗ ହୁଏ ।

## ଖଟ୍ୱାହସ୍ତଃ

ଚତୁରେ ଚତୁରଂ ନ୍ୟସ୍ୟ ତର୍ଜନ୍ୟଙ୍ଗୁଷ୍ଠମୋକ୍ଷତଃ ।
—ଖଟ୍ୱାହସ୍ତୋ ଭବେଦେଷ ଖଟ୍ୱାଶିବିକୟୋଃ ସ୍ମୃତଃ ॥୨୦୨॥

ଚତୁର ହସ୍ତରେ ଚତୁର ହସ୍ତକୁ ନ୍ୟାସ କରି ତର୍ଜନୀ ଓ ଅଙ୍ଗୁଷ୍ଠକୁ ପ୍ରସାର କଲେ ତାହା ଖଟ୍ବହସ୍ତ ହୁଏ । ଖଟ ଓ ପାଲଙ୍କି ଅର୍ଥରେ ଏହାର ବିନିଯୋଗ ହୁଏ ।

## ଭେରୁଣ୍ଡହସ୍ତଃ

ମଣିବନ୍ଧେ କପିତ୍ଥାଭ୍ୟାଂ ଭେରୁଣ୍ଡକର ଇଷ୍ୟତେ ।

ଉଭୟ କପିତ୍ଥହସ୍ତ ମଣିବନ୍ଧରେ ଯୁକ୍ତହେଲେ ଭେରୁଣ୍ଡହସ୍ତ ହୁଏ ।

## ବିନିଯୋଗଃ

ଭେରୁଣ୍ଡେ ପକ୍ଷୀଦମ୍ପତ୍ୟୋ ଭେରୁଣ୍ଡୋ ଯୁଜ୍ୟତେ କରଃ ।।୨୦୩।।

ଭେରୁଣ୍ଡପକ୍ଷୀ ଦମ୍ପତ୍ତି ଅର୍ଥରେ ଭେରୁଣ୍ଡକର ପ୍ରୟୋଗି ହୁଏ ।

# ଦେବହସ୍ତାଃ

ଅଥାବ ବ୍ରହ୍ମରୁଦ୍ରାଦିଦେବତାଭିନୟକ୍ରମାତ୍ ।
ମୂର୍ତ୍ତିଭେଦେନ ଯେ ହସ୍ତାତେଷାଂ ଲକ୍ଷଣମୁଚ୍ୟତେ ।।୨୦୪।।

ଏହାପରେ ବ୍ରହ୍ମା, ରୁଦ୍ର ଆଦି ଦେବତାମାନଙ୍କର ଅଭିନୟ ଓ ମୂର୍ତ୍ତିଭେଦରେ ବ୍ୟବହୃତ ହସ୍ତର ଲକ୍ଷଣ ବର୍ଣ୍ଣନା କରାଯାଉଅଛି ।

## ବ୍ରହ୍ମହସ୍ତଃ

ବ୍ରହ୍ମଣଶ୍ଚତୁରୋ ବାମେ ହଂସାସ୍ୟୋ ଦକ୍ଷିଣେ କରଃ ।

ବ୍ରହ୍ମାଙ୍କର ବାମହସ୍ତରେ ଚତୁର ଓ ଦକ୍ଷିଣହସ୍ତରେ ହଂସାସ୍ୟ କର ।

## ଈଶ୍ୱରହସ୍ତଃ

ଶମ୍ଭୋର୍ବାମେ ମୃଗଶୀର୍ଷସ୍ତ୍ରୀପତାକସ୍ତୁ ଦକ୍ଷିଣେ ।।୨୦୫।।

ଶମ୍ଭୁଙ୍କର ବାମହସ୍ତରେ ମୃଗଶୀର୍ଷ ଏବଂ ଦକ୍ଷିଣ ହସ୍ତରେ ତ୍ରିପତାକା ।

## ବିଷ୍ଣୁହସ୍ତଃ

ହସ୍ତାଭ୍ୟାଂ ତ୍ରିପତାକସ୍ତୁ ବିଷ୍ଣୁହସ୍ତଃ ସ କୀର୍ତ୍ତିତଃ ।

ଉଭୟ ହସ୍ତରେ ତ୍ରିପତାକହସ୍ତ ଧାରଣ କଲେ ତାହା ବିଷ୍ଣୁହସ୍ତ ନାମରେ କୀର୍ତ୍ତିତ ।

## ସରସ୍ୱତୀହସ୍ତଃ

ସୂଚୀକୃତେ ଦକ୍ଷିଣେ ଚ ବାମେ ଚ ହଂସସମକୃତୌ ।।୨୦୬।।
କପିତ୍ଥକେଽପି ଭାରତ୍ୟାଃ କର ସ୍ୟାଦତ୍ର ସମ୍ମତଃ ।

ଦକ୍ଷିଣହସ୍ତରେ ସୂଚୀହସ୍ତ ଓ ବାମହସ୍ତରେ କପିତ୍ଥ ଧାରଣକରି କକ୍ଷସମୀପରେ ସମାନ ଭାବରେ ସ୍ଥାପନ କଲେ ତାହା ସରସ୍ୱତୀହସ୍ତ ହୁଏ ।

## ପାର୍ବତୀ ହସ୍ତଃ

ଊର୍ଦ୍ଧ୍ୱାଧଃ ପ୍ରସୃତାବର୍ଦ୍ଧଚନ୍ଦ୍ରାଖ୍ୟୌ ବାମଦକ୍ଷିଣୌ ।।୨୦୭।।
ଅଭୟୋ ବରଦଶ୍ଚୈବ ପାର୍ବତ୍ୟା କର ଈରିତଃ ।

ଉଭୟ ହସ୍ତରେ ଅର୍ଦ୍ଧଚନ୍ଦ୍ର ଧାରଣକରି ଦକ୍ଷିଣ ଊର୍ଦ୍ଧ୍ୱରେ ଓ ବାମ ନିମ୍ନରେ ସ୍ଥାପିତ ହେଲେ ତାହା ଅଭୟ ଓ ବରଦ ପାର୍ବତୀହସ୍ତ ହୁଏ ।

## ଲକ୍ଷ୍ମୀହସ୍ତଃ

ଅଂସୋପକଣ୍ଠେ ହସ୍ତାଭ୍ୟାଂ କପିତ୍ଥସ୍ତୁ ଶ୍ରିୟଃ କରଃ ।।୨୦୮।।

ଉଭୟ ହସ୍ତରେ କପିତ୍ଥ ଧାରଣ କରି କନ୍ଧ ସମୀପରେ ସ୍ଥାପନ କଲେ ତାହା ଲକ୍ଷ୍ମୀହସ୍ତ ହୁଏ ।

## ବିନାୟକହସ୍ତଃ

ଊରୋଗତାଭ୍ୟାଂ ହସ୍ତାଭ୍ୟାଂ କପିତ୍ଥୋ ବଧ୍ନୁତଃ କରଃ ।

ଦୁଇହସ୍ତରେ କପିତ୍ଥହସ୍ତ ଧାରଣ କରି ଊରୁରେ ସ୍ଥାପନ କଲେ ତାହା ଗଣେଶ ହସ୍ତ ହୁଏ ।

## ଷଣ୍ମୁଖହସ୍ତଃ

ବାମେ କରେ ତ୍ରିଶୂଳଞ୍ଚ ଶିଖରୋ ଦକ୍ଷିଣେ କରେ ॥୨୦୯॥
ଊର୍ଦ୍ଧ୍ୱଂଗତେ ଷଣ୍ମୁଖସ୍ୟ ହସ୍ତଃ ସ୍ୟାଦିତ କୀର୍ତ୍ତିତଃ ।

ବାମକରରେ ତ୍ରିଶୂଳ ଓ ଊର୍ଦ୍ଧ୍ୱସ୍ଥିତ ଦକ୍ଷିଣକରରେ ଶିଖର ହସ୍ତ ଧାରଣ କଲେ ତାହା ଷଣ୍ମୁଖ (କାର୍ତ୍ତିକେୟ) ହସ୍ତ ହୁଏ ।

## ମନ୍ମଥହସ୍ତଃ

ବାମେ କରେ ତୁ ଶିଖରୋ ଦକ୍ଷିଣ କଟକାମୁଖଃ ॥୨୧୦॥
ମନ୍ମଥସ୍ୟ କରଃ ପ୍ରୋକ୍ତୋ ନାଟ୍ୟଶାସ୍ତ୍ରାର୍ଥକୋବିଦୈଃ ।

ବାମକରରେ ଶିଖର ଓ ଦକ୍ଷିଣରେ କଟକାମୁଖହସ୍ତ ଧାରଣ କଲେ ନାଟ୍ୟଶାସ୍ତ୍ରକୋବିଦଗଣ ତାକୁ ମନ୍ମଥହସ୍ତ କହନ୍ତି ।

## ଇନ୍ଦ୍ରହସ୍ତଃ

ତ୍ରିପତାକଃ ସ୍ୱସ୍ତିକଞ୍ଚଇନ୍ଦ୍ରହସ୍ତଃ ପ୍ରକୀର୍ତ୍ତିତଃ ॥୨୧୧॥

ଉଭୟ ହସ୍ତରେ ତ୍ରିପତାକା ସ୍ୱସ୍ତିକାକାରରେ ଧାରଣ କଲେ ତାହା ଇନ୍ଦ୍ରହସ୍ତ ହୁଏ ।

## ଅଗ୍ନିହସ୍ତଃ

ତ୍ରିପତାକୋ ଦକ୍ଷିଣେ ତୁ ବାମେ କାଙ୍ଗୁଳହସ୍ତକଃ ।
ଅଗ୍ନିହସ୍ତଃ ସ ବିଜ୍ଞେୟୋ ନାଟ୍ୟଶାସ୍ତ୍ରବିଶାରଦୈଃ ॥୨୧୨॥

ଦକ୍ଷିଣହସ୍ତରେ ତ୍ରିପତାକା ଓ ବାମରେ କାଙ୍ଗୂଳହସ୍ତ ଧାରଣ କଲେ ନାଟ୍ୟଶାସ୍ତ୍ରବିଶାରଦଗଣ ଅଗ୍ନିହସ୍ତ କହନ୍ତି ।

## ଯମହସ୍ତଃ

ବାମେ ପାଶଂ ଦକ୍ଷିଣେ ତୁ ସୂଚୀ ଯମକରଃ ସ୍ମୃତଃ ।

ବାମରେ ପାଶହସ୍ତ ଓ ଦକ୍ଷିଣରେ ସୂଚୀହସ୍ତ ଧାରଣ କଲେ ତାହା ଯମକର ହୁଏ ।

## ନୈର୍ଋତହସ୍ତଃ

ଖଟ୍ୱା ଚ ଶକଟଶ୍ଚୈବ କୀର୍ତ୍ତିତୋ ନୈର୍ଋତକରଃ ॥୨୧୩॥

ଖଟ୍ୱ ଓ ଶକଟହସ୍ତ ଧାରଣ କଲେ ତାହା ନୈର୍ଋତହସ୍ତ ହୁଏ ।

## ବରୁଣହସ୍ତଃ

ପତାକୋ ଦକ୍ଷିଣେ ବାମେ ଶିଖରୋ ବରୁଣଃ କରଃ ।

ଦକ୍ଷିଣହସ୍ତରେ ପତାକା ଓ ବାମରେ ଶିଖର—ଏହା ବରୁଣହସ୍ତ ।

## ବାୟୁହସ୍ତଃ

ଅରାଳୋ ଦକ୍ଷିଣେ ହସ୍ତେ ବାମେ ତ୍ୱର୍ଦ୍ଧପତାକକା ॥୨୧୪॥
ଧୃତା ଚେଦ୍‌ବାୟୁଦେବସ୍ୟ କର ଇତ୍ୟଭିଧୀୟତେ ।

ଦକ୍ଷିଣହସ୍ତରେ ଅରାଳ ଓ ବାମ ହସ୍ତରେ ଅର୍ଦ୍ଧପତାକା ଧାରଣ କଲେ ତାହା ବାୟୁଦେବର କର ବୋଲି ଅଭିହିତ ।

## କୁବେରହସ୍ତଃ

ବାମେ ପଦ୍ମଂ ଦକ୍ଷିଣେ ତୁ ଗଦା ଯକ୍ଷପତେଃ କରଃ ।

ବାମରେ ପଦ୍ମ ଓ ଦକ୍ଷିଣରେ ଗଦା—ଏହା ଯକ୍ଷପତି (କୁବେର)ର କର ।

# ଦଶାବତାରହସ୍ତାଃ

## ମତ୍ସ୍ୟାବତାରହସ୍ତଃ

ମତ୍ସ୍ୟହସ୍ତଂ ଦର୍ଶୟିତ୍ୱା ତତଃ ସ୍କନ୍ଧସମୌ କରୌ ।
ଧୃତୌ ମତ୍ସ୍ୟାବତାରସ୍ୟ ହସ୍ତ ଇତ୍ୟଭିଧୀୟତେ ॥୨୧୬॥

ମତ୍ସ୍ୟହସ୍ତ ପ୍ରଦର୍ଶନ କରି ତାହାପରେ ସ୍କନ୍ଧ ସମାନରେ କରଦ୍ୱୟ ଧାରଣ କଲେ ତାହା ମତ୍ସ୍ୟାବତାର ହସ୍ତ ବୋଲି ଅଭିହିତ ହୁଏ ।

## କୂର୍ମ୍ମାବତାର ହସ୍ତଃ

କୂର୍ମହସ୍ତଂ ଦର୍ଶୟିତ୍ୱା ତତଃ ସ୍କନ୍ଧସମୌ କରୌ ।
ଧୃତୌ କୂର୍ମାବତାରସ୍ୟ ହସ୍ତ ଇତ୍ୟଭିଧୀୟତେ ॥୨୧୭॥

କୂର୍ମହସ୍ତ ଦେଖାଇ ତାହାପରେ ସ୍କନ୍ଧସମାନରେ ହସ୍ତଦ୍ୱୟ ଧାରଣ କଲେ କୂର୍ମ୍ମାବତାର ହସ୍ତ ବୋଲି ଅଭିହିତ ହୁଏ ।

## ବରାହାବତାରହସ୍ତଃ

ଦର୍ଶୟିତ୍ୱା ବରାହଂ ତୁ କଟିପାର୍ଶ୍ୱେ ସମୌ କରୌ ।
ଧୃତା ବରାହାବତାରସ୍ୟ ଦେବସ୍ୟ କର ଇଷ୍ୟତେ ॥୨୧୮॥

ବରାହହସ୍ତ ଦେଖାଇ କଟୀ ପାର୍ଶ୍ୱରେ ସମାନଭାବରେ ସ୍ଥାପନ କଲେ ତାହାକୁ ବରାହାବତାର ହସ୍ତ କହନ୍ତି ।

## ନୃସିଂହାବତାରହସ୍ତଃ

ବାମେ ସିଂହମୁଖଂ ଧୃତ୍ୱା ଦକ୍ଷିଣେ ତ୍ରିପତାକକା ।
ନରସିଂହାବତାରସ୍ୟ ହସ୍ତ ଇତ୍ୟୁଚ୍ୟତେ ବୁଧୈଃ ॥୨୧୯॥

ବାମରେ ସିଂହମୁଖ ଓ ଦକ୍ଷିଣରେ ତ୍ରିପତାକା ହସ୍ତ ଧାରଣ କଲେ ତାହାକୁ ପଣ୍ଡିତଗଣ ସିଂହାବତାର ହସ୍ତ କହନ୍ତି ।

## ବାମନାବତାରହସ୍ତଃ

ଊର୍ଦ୍ଧ୍ୱାଧୋ ଧୃତମୁଷ୍ଟିଭ୍ୟାଂ ସବ୍ୟାନ୍ୟାଭ୍ୟାଂ ଯଦା ସ୍ଥିତଃ ।
ସ ବାମନାବତାରସ୍ୟ ହସ୍ତ ଇତ୍ୟଭିଧୀୟତେ ॥୨୨୦॥

ଉଭୟହସ୍ତରେ ମୁଷ୍ଟି ହସ୍ତ ଧାରଣ କରି ବାମକୁ ଊର୍ଦ୍ଧ୍ୱରେ ଓ ଦକ୍ଷିଣକୁ ନିମ୍ନରେ ସ୍ଥାପନ କଲେ ତାହା ବାମନାବତାର ହସ୍ତ ନାମରେ ଅଭିହିତ ହୁଏ ।

## ପରଶୁରାମାବତାରହସ୍ତଃ

ବାମଂ କଟିତଟେ ନ୍ୟସ୍ୟ ଦକ୍ଷିଣେଽର୍ଦ୍ଧପତାକିକା ।
ଧୃତା ପରଶୁରାମସ୍ୟ ହସ୍ତ ଇତ୍ୟଭିଧୀୟତେ ॥୨୨୧॥

ବାମ ହସ୍ତକୁ କଟୀତଟରେ ନ୍ୟାସ କରି ଦକ୍ଷିଣ ହସ୍ତରେ ଅର୍ଦ୍ଧପତାକା ହସ୍ତ ଧାରଣ କଲେ ତାହା ପରଶୁରାମାବତାର ହସ୍ତ ବୋଲି ଅଭିହିତ ହୁଏ ।

## ରାମଚନ୍ଦ୍ରାବତାରହସ୍ତଃ

କପିତ୍ଥୋ ଦକ୍ଷିଣେ ହସ୍ତେ ବାମେ ତୁ ଶିଖରଃ କରଃ ।
ଊର୍ଦ୍ଧ୍ୱଂ ଧୃତୋ ରାମଚନ୍ଦ୍ର ହସ୍ତ ଇତ୍ୟୁଚ୍ୟତେ ବୁଧୈଃ ॥୨୨୨॥

ଦକ୍ଷିଣ ହସ୍ତରେ କପିତ୍ଥ ଓ ବାମରେ ଶିଖର ହସ୍ତ ଊର୍ଦ୍ଧ୍ୱରେ ଧାରଣ କଲେ ତାହାକୁ ରାମଚନ୍ଦ୍ର ହସ୍ତ ବୋଲି ପଣ୍ଡିତଗଣ କହନ୍ତି ।

## ବଳରାମାବତାରହସ୍ତଃ

ପତାକୋ ଦକ୍ଷିଣେ ହସ୍ତେ ମୁଷ୍ଟିର୍ବାମକରେ ତଥା ।
ବଳରାମାବତାରସ୍ୟ ହସ୍ତ ଇତ୍ୟୁଚ୍ୟତେ ବୁଧୈଃ ॥୨୨୩॥

ଦକ୍ଷିଣ ହସ୍ତରେ ପତାକା ଓ ବାମ ହସ୍ତରେ ମୁଷ୍ଟି- ପଣ୍ଡିତଗଣ ଏହାକୁ ବଳରାମାବତାର ହସ୍ତ କହନ୍ତି ।

### କୃଷ୍ଣାବତାରହସ୍ତଃ

ମୃଗଶୀର୍ଷେ ତୁ ହସ୍ତାଭ୍ୟାମନ୍ୟୋନ୍ୟାଭିମୁଖେ କୃତେ ।
ଆସ୍ୟୋପକଣ୍ଠେ କୃଷ୍ଣସ୍ୟ ହସ୍ତ ଇତ୍ୟୁଚ୍ୟତେ ବୁଧୈଃ ॥୨୨୪॥

ଉଭୟ ମୃଗଶୀର୍ଷ ହସ୍ତ ମୁଖ ସମୀପରେ ବପରୀତ ମୁଖାକୃତରେ ସ୍ଥାପିତ ହେଲେ ତାହାକୁ ଜ୍ଞାନୀମାନେ କୃଷ୍ଣାବତାର ହସ୍ତ କହନ୍ତି ।

### କଲ୍କ୍ୟବତାରହସ୍ତଃ

ପତାକୋ ଦକ୍ଷିଣେ ବାମେ ତ୍ରିପତାକଃ କରେ ଧୃତଃ ।
କଲ୍କାଖ୍ୟସ୍ୟାବତାରସ୍ୟ ହସ୍ତ ଇତ୍ୟଭିଧୀୟତେ ॥୨୨୫॥

ଦକ୍ଷିଣ ହସ୍ତରେ ପତାକା ଓ ବାମ ହସ୍ତରେ ତ୍ରିପତାକା ଧାରଣ କଲେ ତାହା କଲ୍କୀଅବତାର ହସ୍ତ ହୁଏ ।

## ଅଥ ଜାତିଜ୍ଞାପକହସ୍ତାଃ

### ରାକ୍ଷସହସ୍ତଃ

ମୁଖେ କରାଭ୍ୟା ଶକଟୌ ରାକ୍ଷସାନାଂ କରଃ ସ୍ମୃତଃ

ମୁଖ ସମୀପରେ ଉଭୟ ହସ୍ତରେ ଶକଟ ହସ୍ତ ଧାରଣ କଲେ ତାହା ରାକ୍ଷସ କର ହୁଏ ।

### ବ୍ରାହ୍ମଣହସ୍ତଃ

କରାଭ୍ୟା ଶିଖରଂ ଧୃତ୍ୱା ଯଜ୍ଞସୂତ୍ରସ୍ୟ ସୂଚନେ ॥୨୨୬॥
ଦକ୍ଷିଣେନ କୃତେ ତିର୍ଯ୍ୟଗ୍ ବ୍ରାହ୍ମଣାନାଂ କରଃ ସ୍ମୃତଃ ।

ଉଭୟ କରରେ ଶିଖର ହସ୍ତ ଧାରଣ କରି ଦକ୍ଷିଣ ହସ୍ତକୁ ତିର୍ଯ୍ୟକ୍ କରି ଯଜ୍ଞସୂତ୍ର (ପଇତା)ର ସୂଚନା ଦେଲେ ତାହା ବ୍ରାହ୍ମଣ କର ହୁଏ ।

## କ୍ଷତ୍ରିୟହସ୍ତଃ

ବାମେନ ଶିଖରଂ ତର୍ଯ୍ୟଗ୍ ଧୃତ୍ୱାନ୍ୟେନ ପତାକକା ।।୨୨୭।।
ଧୃତ୍ୱା ଯଦ୍ୱ କ୍ଷତ୍ରିୟାଣାଂ ହସ୍ତ ଇତ୍ୟଭିଧୀୟତେ ।

ବାମ ହସ୍ତରେ ତର୍ଯ୍ୟକ୍ ଭାବରେ ଶିଖର ମୁଦ୍ରା ଧାରଣ କରି ଅନ୍ୟ ହସ୍ତରେ ପତାକା ହସ୍ତ ଧାରଣ କଲେ ତାକୁ କ୍ଷତ୍ରିୟ ହସ୍ତ ବୋଲାଯାଏ ।

## ବୈଶ୍ୟହସ୍ତଃ

କରେ ବାମେତୁ ହଂସାସ୍ୟେ ଦକ୍ଷିଣେ କଟକାମୁଖଃ ।।୨୨୮।।
ବୈଶ୍ୟହସ୍ତୋଽୟମାଖ୍ୟାତୋ ମୁନିଭିର୍ଭରତାଦିଭିଃ ।

ବାମ କରରେ ହଂସାସ୍ୟ ଓ ଦକ୍ଷିଣ କରରେ କଟକାମୁଖ —ଏହା ବୈଶ୍ୟହସ୍ତ ବୋଲି ଭରତାଦିମୁନିଙ୍କଦ୍ୱାରା ଆଖ୍ୟାତ ହୋଇଅଛି ।

## ଶୂଦ୍ରହସ୍ତଃ

ବାମେ ତୁ ଶିଖରଂ ଧୃତ୍ୱା ଦକ୍ଷିଣେ ମୃଗଶୀର୍ଷକଃ ।।୨୨୯।।
ଶୂଦ୍ରହସ୍ତଃ ସ ବିଜ୍ଞେୟୋ ମୁନିଭିର୍ଭରତାଦିଭିଃ ।

ବାମରେ ଶିଖର ଧାରଣ କରି ଦକ୍ଷିଣରେ ମୃଗଶୀର୍ଷ—ଏହା ଭରତାଦି ମୁନିଗଣ କର୍ତ୍ତୃକ ଶୂଦ୍ରହସ୍ତ ବୋଲି ଜ୍ଞାତ ।

ଯଦଷ୍ଟାଦଶଜାତୀନାଂ କର୍ମ ତେନ କରାଃ ସ୍ମୃତାଃ ।।୨୩୦।।
ତତ୍ତଦ୍ଦେଶଜାନାମପି ଏବମୂହ୍ୟଂ ବୁଧୋତ୍ତମୈଃ ।

ଅଷ୍ଟାଦଶ ଜାତିର ଯେଉଁପରି କର୍ମ ସେହିପରି କର କୁହାଯାଇଛି । ଏହିପରି ଜ୍ଞାନୀ ଲୋକମାନେ ବିଭିନ୍ନ ଦେଶରେ ଥିବା ଜାତି ହସ୍ତ ମଧ୍ୟ ଜାଣି ପାରିବେ ।

# ବାନ୍ଧବହସ୍ତାଃ

## ଦମ୍ପତିହସ୍ତଃ

ବାମେ ତୁ ଶିଖରଂ ଧୃତ୍ୱା ଦକ୍ଷିଣେ ମୃଗଶୀର୍ଷକଃ ।।୨୩୧।।
ଧୃତଃ ସ୍ତ୍ରୀପୁଂସୟୋହସ୍ତଃ ଖ୍ୟାତୋ ଭରତକୋବଦୈଃ ।

ବାମ ହସ୍ତରେ ଶିଖର ଧାରଣକରି ଦକ୍ଷିଣରେ ମୃଗଶୀର୍ଷ ହସ୍ତ ଧାରଣ କଲେ ତାହା ନାଟ୍ୟବିଦ୍‌ମାନଙ୍କ ଦ୍ୱାରା ସ୍ତ୍ରୀ ପୁରୁଷ ହସ୍ତ ବୋଲି ଖ୍ୟାତ ।

## ମାତୃହସ୍ତଃ

ବାମେ ହସ୍ତେଽର୍ଦ୍ଧଚନ୍ଦ୍ରଶ୍ଚ ସନ୍ଦଂଶୋ ଦକ୍ଷିଣେ କରେ ।।୨୩୨।।

ଆବର୍ତ୍ତୟିତ୍ୱା ଜଠରେ ବାମହସ୍ତଂ ତତଃ ପରମ୍ ।
ସ୍ତ୍ରିୟାଃ କଟେର୍ଧୃତୋ ମାତୃହସ୍ତ ଇତ୍ୟୁଚ୍ୟତେ ବୁଧୈଃ ।।୨୩୩।।

ବାମହସ୍ତରେ ଅର୍ଦ୍ଧଚନ୍ଦ୍ର ଓ ଦକ୍ଷିଣରେ ସନ୍ଦଂଶହସ୍ତ ଧାରଣକରି ତାହାପରେ ବାମହସ୍ତ ଉଦରରେ ବୁଲାଇ ସ୍ତ୍ରୀ ହସ୍ତ ଧାରଣ କଲେ ତାହା ମାତୃହସ୍ତ ବୋଲି ପଣ୍ଡିତମାନଙ୍କଦ୍ୱାରା କଥିତ ।

## ବିନିଯୋଗଃ

ଜନନ୍ୟାଂଚ କୁମାର୍ଯ୍ୟାଞ୍ଚ ମାତୃହସ୍ତୋ ନିଯୁଜ୍ୟତେ ।

ଜନନୀ ଓ କୁମାରୀ ଅର୍ଥରେ ମାତୃହସ୍ତର ପ୍ରୟୋଗ ହୁଏ ।

## ପିତୃହସ୍ତଃ

ଏତସ୍ମିନ୍ ମାତୃହସ୍ତେ ତୁ ଶିଖରେ ଦକ୍ଷିଣେନ ତୁ ।।୨୩୪।।
ଧୃତେ ସତି ପିତୃହସ୍ତ ଇତ୍ୟାଖ୍ୟାତୋ ମନୀଷିଭିଃ ।।

ଏହ୍ୱି ମାତୃହସ୍ତରେ ଯଦ୍ଧ ଦକ୍ଷିଣ ହସ୍ତରେ ଶିଖର ଧାରଣ କରାଯାଏ ମନୀଷିଗଣ ତାହାକୁ ପିତୃହସ୍ତ ବୋଲି କହନ୍ତି ।

## ବିନିଯୋଗଃ

ଅସ୍ୟଂ ହସ୍ତନ୍ତୁ ଜନକେ ଜାମାତରି ଚ ଯୁଜ୍ୟତେ ।।୨୩୫।।

ପିତା ଓ ଜାମାତା ଅର୍ଥରେ ଏହାର ପ୍ରୟୋଗ ହୁଏ ।

## ଶ୍ୱଶ୍ରୂହସ୍ତଃ

ହନ୍ୟସ୍ୟ କଣ୍ଠେ ହଂସାସ୍ୟ ସନ୍ଦଂଶଂ ଦକ୍ଷିଣେ କରେ ।
ଉଦରେ ଚ ପରମ୍ପରସ୍ୟ ବାମହସ୍ତଂ ତତଃ ପରମ୍ ।।୨୩୬।।
ସ୍ତ୍ରିୟାଃ କରେ ଧୃତଃ ଶ୍ୱଶ୍ରୂହସ୍ତସ୍ତସ୍ୟାଂ ନୟୁଜ୍ୟତେ ।

କଣ୍ଠ ସମୀପରେ ଦକ୍ଷିଣକରଦ୍ୱାରା ହଂସାସ୍ୟ ଓ ହନ୍ଦଂଶ ହସ୍ତ ଧାରଣ କରି ତାହାପରେ ବାମହସ୍ତ ଉଦରରେ ଯଦି ସ୍ତ୍ରୀ ହସ୍ତ ଧାରଣ କଲେ ତାହା ଶାଶୁ ହସ୍ତ ହୁଏ ଏବଂ ତାହା ଶାଶୁ-ଅର୍ଥରେ ପ୍ରୟୋଗ ହୁଏ ।

## ଶ୍ୱଶୁରହସ୍ତଃ

ଏତସ୍ୟାନ୍ତେ ତୁ ହସ୍ତସ୍ୟ ଶିଖରେ ଦକ୍ଷିଣେ ଯଦ୍ଧ ।।୨୩୭।।
ଧୃତସ୍ତ ଶ୍ୱଶୁରସ୍ୟାୟଂ ହସ୍ତ ଇତ୍ୟୁଚ୍ୟତେ ବୁଧୈଃ

ଏହି ହସ୍ତ ପରେ ଯଦ୍ଧ ଦକ୍ଷିଣକରରେ ଶିଖର ଧାରଣ କରାଯାଏ ପଣ୍ଡିତଗଣ ତାହାକୁ ଶ୍ୱଶୁର ହସ୍ତ କହନ୍ତି ।

## ଭର୍ତ୍ତୃଭ୍ରାତୃହସ୍ତଃ

ବାମେ ତୁ ଶିଖରଂ ଧୃତ୍ୱା ପାର୍ଶ୍ୱୟୋଃ କର୍ତ୍ତରୀମୁଖଃ ।।୨୩୮।।
ଧୃତୋ ଦକ୍ଷିଣହସ୍ତେନ ଭର୍ତ୍ତୃ ଭ୍ରାତୃକରଃ ସ୍ମୃତଃ ।

ବାମହସ୍ତରେ ଶିଖର ଧାରଣ କରି ଦକ୍ଷିଣ ହସ୍ତରେ ଉଭୟ-ପାର୍ଶ୍ୱରେ କର୍ତ୍ତରୀମୁଖ ଧାରଣ କଲେ ତାହା ଭର୍ତ୍ତୃଭ୍ରାତୃ (ଦିଅର) ହସ୍ତ ହୁଏ ।

## ନନାନ୍ଦୃହସ୍ତଃ

ଅନ୍ତେ ଚୈତସ୍ୟ ହସ୍ତସ୍ୟ ସ୍ତ୍ରୀହସ୍ତୋ ଦକ୍ଷିଣେ କରେ ॥୨୩୯॥
ଧୃତୋ ନନାନ୍ଦୃହସ୍ତଃ ସ୍ୟାଦିତି ନାଟ୍ୟବିଦାଂ ମତମ୍ ।

ଏହାପରେ ସେହି ହସ୍ତ (ଭର୍ତ୍ତୃଭ୍ରାତୃ)ର ଦକ୍ଷିଣକରରେ ସ୍ତ୍ରୀ ହସ୍ତ ଧାରଣ କଲେ ନାଟ୍ୟବିଦ୍‌ଗଣ ନଣନ୍ଦହସ୍ତ ହୁଏ ବୋଲି ମତ ଦିଅନ୍ତି ।

## ଜ୍ୟେଷ୍ଠକନିଷ୍ଠଭ୍ରାତୃହସ୍ତଃ

ମୟୂରହସ୍ତଃ ପୁରତଃ ପାର୍ଶ୍ୱଭାଗେ ଚ ଦର୍ଶିତା ॥୨୪୦॥
ଜ୍ୟେଷ୍ଠଭ୍ରାତୁଃ କନିଷ୍ଠ ସ୍ୟାଦ୍ୟସ୍ୟଂ ହସ୍ତ ଇତି ସ୍ମୃତଃ ।

ମୟୂରହସ୍ତ ସମ୍ମୁଖ ଓ ପାର୍ଶ୍ୱ ଦେଶରେ ଦର୍ଶାଇଲେ ତାହା ଜ୍ୟେଷ୍ଠ ଭ୍ରାତା ଓ କନିଷ୍ଠଭ୍ରାତା ହସ୍ତ ହୁଏ ।

## ପୁତ୍ରହସ୍ତଃ

ସନ୍ଦଂଶମୁଦରେ ନ୍ୟସ୍ୟ ଭ୍ରାମୟିତ୍ୱା ତତଃ ପରମ୍ ॥୨୪୧॥
ଧୃତୋ ବାମେନ ଶିଖରଂ ପୁତ୍ରହସ୍ତଃ ପ୍ରକୀର୍ତ୍ତିତଃ ।

ଉଦରରେ ସନ୍ଦଂଶହସ୍ତ ନ୍ୟସ୍ତକରି ବୁଲାଇବା ପରେ ବାମରେ ଶିଖରହସ୍ତ ଧାରଣ କଲେ ପୁତ୍ର ହସ୍ତ ହୁଏ ।

## ସ୍ନୁଷାହସ୍ତଃ

ଏତଦନ୍ତେ ଦକ୍ଷିଣେନ ସ୍ତ୍ରୀହସ୍ତଶ୍ଚ ଧୃତୋ ଯଦି ॥୨୪୨॥
ସ୍ନୁଷାହସ୍ତ ଇତି ଖ୍ୟାତୋ ଭରତାଗମ କୋବିଦୈଃ

ଏହାପରେ ଦକ୍ଷିଣ ହସ୍ତରେ ଯଦି ସ୍ତ୍ରୀ ହସ୍ତ ଧାରଣ କରାଯାଏ ତାହା ସୂଚୀ (ଶାଳୀ) ହସ୍ତ ହୁଏ ।

## ସପତ୍ନୀହସ୍ତଃ

ଦର୍ଶୟିତ୍ୱା ପାଶହସ୍ତଂ କରାଭ୍ୟାଂ ସ୍ତ୍ରୀକରାବୁଭୌ ।।୨୪୩।।
ଧୃତୌ ସପତ୍ନୀହସ୍ତଃ ସ୍ୟାଦତି ଭରତବିଦୋ ବଦୁଃ ।

ପାଶହସ୍ତ ଦର୍ଶାଇବା ପରେ ଉଭୟ କରରେ ଦୁଇଟି ସ୍ତ୍ରୀ ହସ୍ତ ଧାରଣ କରାଗଲେ ତାହା ସପତ୍ନୀ ହସ୍ତ ହୁଏ ବୋଲି ଭରତବିଦ୍‌ଗଣ କହି ଥାଆନ୍ତି ।

## ନୃତ୍ତହସ୍ତାନାଂ ଗତୟଃ

ଭବନ୍ତି ନୃତ୍ତହସ୍ତାନାଂ ଗତୟଃ ପଞ୍ଚଧା ଭୁବ ।।୨୪୪।।
ଊର୍ଦ୍ଧ୍ୱାଧରୋତ୍ତରା ପ୍ରାଚୀ ଦକ୍ଷିଣା ଚେତି ବିଶ୍ରୁତା ।
ଯଥା ସ୍ୟାତ୍ ପାଦବିନ୍ୟାସସ୍ତଥୈବ କରୟୋରପି ।।୨୪୫।।

ବାମାଙ୍ଗଭାଗେ ବାମସ୍ୟ ଦକ୍ଷିଣେ ଦକ୍ଷିଣସ୍ୟ ଚ ।
କୁର୍ଯ୍ୟାତ୍ ପ୍ରଚଳନଂ ହେତନ୍ନୃତ୍ତସିଦ୍ଧାନ୍ତଲକ୍ଷଣମ୍ ।।୨୪୬।।

ଯତୋ ହସ୍ତସ୍ତତୋ ଦୃଷ୍ଟିର୍ଯତୋ ଦୃଷ୍ଟିସ୍ତତୋ ମନଃ
ଯତୋ ମନସ୍ତତୋ ଭାବୋ ଯତୋ ଭାବସ୍ତତୋ ରସଃ ।।୨୪୭।।

ଏହି ପୃଥିବୀରେ ନୃତ୍ତହସ୍ତ ସମୂହର ଗତି ପାଞ୍ଚ ପ୍ରକାର— ଊର୍ଦ୍ଧ୍ୱ, ଅଧୋ (ନିମ୍ନ), ଉତ୍ତର, ପ୍ରାଚୀ ଓ ଦକ୍ଷିଣା । ନୃତ୍ତ ସିଦ୍ଧାନ୍ତ ଲକ୍ଷଣ ଅନୁସାରେ କର ବିନ୍ୟାସ କରାଯିବା ଉଚିତ । ବାମ ଅଙ୍ଗଭାଗରେ ବାମର ଓ ଦକ୍ଷିଣ ଭାଗରେ ଦକ୍ଷିଣର ବିନ୍ୟାସ କରାଯିବା ଉଚିତ୍ । ଯେଉଁଠି ହସ୍ତ ସେଇଠି ଦୃଷ୍ଟି, ଯେଉଁଠି ଦୃଷ୍ଟି ସେଇଠି ମନ, ଯେଉଁଠି ମନ ସେଇଠି ଭାବ ଏବଂ ଯେଉଁଠି ଭାବ ସେଇଠି ରସ ।

## ନୃତ୍ତହସ୍ତାଃ

ପତାକା ସ୍ୱସ୍ତିକାଖ୍ୟଶ୍ଚ ଡୋଲହସ୍ତସ୍ତଥାଞ୍ଜଳିଃ
କଟକାବର୍ଦ୍ଧନଶ୍ଚୈବ ଶକଟଃ ପାଶକୀଲକୌ ॥୨୪୮॥

କପିତ୍ଥ ଶିଖରଃ କୂର୍ମ୍ମୋ ହଂସାସ୍ୟଶ୍ଚାଳ ପଦ୍ମକଃ ।
ତ୍ରୟୋଦଶୈତେ ହସ୍ତା ସ୍ୟୁର୍ନୃତ୍ତସ୍ୟାପ୍ୟୁପଯୋଗିନଃ ॥୨୪୯॥

ପତାକ, ସ୍ୱସ୍ତିକ, ଡୋଲାହସ୍ତ, ଅଞ୍ଜଳି, କଟକାବର୍ଦ୍ଧନ, ଶକଟ, ପାଶ, କୀଳକ, କପିତ୍ଥ, ଶିଖର, କୂର୍ମ୍ମ, ହଂସାସ ଏବଂ ଅଳପଦ୍ମ, ଏହି ତ୍ରୟୋଦଶ ପ୍ରକାର ହସ୍ତ ନୃତ୍ତ ଉପଯୋଗୀ ଅଟନ୍ତି ।

## ନବଗ୍ରହହସ୍ତାଃ

### ସୂର୍ଯ୍ୟହସ୍ତଃ

ଅଂସୋପକଣ୍ଠେ ହସ୍ତାଭ୍ୟାମଳପଦ୍ମକପିତ୍ଥକଃ ।
ଧୃତୋ ଯଦି କରେ ଜ୍ଞେୟ ଦିବାକରକରଃ ସ୍ମୃତଃ ॥୨୫୦॥

କାନ୍ଧ ସମୀପରେ ହସ୍ତ ଦ୍ୱୟରେ ଅଳପଦ୍ମ ଓ କପିତ୍ଥ ହସ୍ତ ଯଦି ଧାରଣ କରାଯାଏ ଯାହା ଦିବାକର ବା ସୂର୍ଯ୍ୟହସ୍ତ ବୋଲି କହାତ ।

### ଚନ୍ଦ୍ରହସ୍ତଃ

ଅଳପଦ୍ମୋ ବାମହସ୍ତେ ଦକ୍ଷିଣେ ଚ ପତାକକା
ନିଶାକର କରଃ ପ୍ରୋକ୍ତୋ ଭରତାଗମଦର୍ଶିଭିଃ ॥୨୫୧॥

ବାମହସ୍ତରେ ଅଳପଦ୍ମ ଓ ଦକ୍ଷିଣରେ ପତାକାହସ୍ତ ଧାରଣ କଲେ ତାହା ଭରତଶାସ୍ତ୍ରବିଦ୍‌ଗଣଙ୍କ ଦ୍ୱାରା ଚନ୍ଦ୍ରହସ୍ତ ନାମରେ କଥିତ ହୁଏ ।

## କୁଜହସ୍ତଃ

ବାମେ କରେ ତୁ ସୂଚୀ ସ୍ୟାନ୍ମୁଷ୍ଟିହସ୍ତସ୍ତୁ ଦକ୍ଷିଣେ।
ଧୃତଶ୍ଚେନ୍ନାଟ୍ୟ ଶାସ୍ତ୍ରଜ୍ଞୈରଙ୍ଗାରକକରଃ ସ୍ମୃତଃ ୨୫୨।।

ବାମକରରେ ସୂଚୀହସ୍ତ ଓ ଦକ୍ଷିଣ କରରେ ମୁଷ୍ଟିହସ୍ତ ଧାରଣ କଲେ ତାକୁ ନାଟ୍ୟଶାସ୍ତ୍ରଜ୍ଞଗଣ କୁଜ (ମଙ୍ଗଳ) ହସ୍ତ କହନ୍ତି।

## ବୁଧହସ୍ତଃ

ଊର୍ଦ୍ଧ୍ୱଗ୍‌ବାମେ ଚ ମୁଷ୍ଟିଃ ସ୍ୟାଦ୍ଦକ୍ଷିଣେ ଚ ପତାକିକା।
ବୁଧଗ୍ରହକରଃ ପ୍ରୋକ୍ତୋ ଭରତାଗମବେଦିଭିଃ ।।୨୫୩।।

ଊର୍ଦ୍ଧ୍ୱକ୍ ବାମ ହସ୍ତରେ ମୁଷ୍ଟି ଓ ଦକ୍ଷିଣ ହସ୍ତରେ ପତାକା ଭରତ ଶାସ୍ତ୍ର ବିଦ୍‌ଗଣ ଏହାକୁ ବୁଧଗ୍ରହହସ୍ତ ବୋଲି କହନ୍ତି।

## ଗୁରୁହସ୍ତଃ

ହସ୍ତାଭ୍ୟାଂ ଶିଖରଂ ଧୃତ୍ୱା ଯଜ୍ଞସୂତ୍ରସ୍ୟ ଦର୍ଶନମ୍ ।
ଋଷିବ୍ରାହ୍ମଣହସ୍ତୋଽୟଂ ଗୁରୋଶ୍ଚାପି ପ୍ରକୀର୍ତ୍ତିତଃ ।।୨୫୪।।

ଦୁଇ ହସ୍ତରେ ଶିଖର ଧାରଣ କରି ଯଜ୍ଞସୂତ୍ର ପ୍ରଦର୍ଶନ କଲେ ତାହା ଋଷି, ବ୍ରାହ୍ମଣ ଓ ଗୁରୁହସ୍ତ ହୁଏ।

## ଶୁକ୍ରହସ୍ତଃ

ବାମୋର୍ଦ୍ଧ୍ୱଭାଗେ ମୁଷ୍ଟିଃ ସ୍ୟାଦଧସ୍ତାଦ୍ଦକ୍ଷିଣେ ତଥା।
ଶୁକ୍ରଗ୍ରହକରଃ ପ୍ରୋକ୍ତୋ ଭରତାଗମବେଦିଭିଃ ।।୨୫୫।।

ଉଭୟ ହସ୍ତରେ ମୁଷ୍ଟି ଧାରଣ କରି ବାମ ଉପର ଭାଗରେ ଓ ଦକ୍ଷିଣ ନିମ୍ନଭାଗରେ ସ୍ଥାପିତ ହେଲେ ତାହାକୁ ଭରତଶାସ୍ତ୍ରଜ୍ଞଗଣ ଶୁକ୍ରଗ୍ରହକର କହନ୍ତି।

## ଶନିହସ୍ତଃ

ବାମେ କରେ ତୁ ଶିଖର୍ ତ୍ରିଶୂଳୋ ଦକ୍ଷିଣେ କରେ ।
ଶନୈଶ୍ଚରକରଃ ପ୍ରୋକ୍ତୋ ଭରତାଗମକୋବଦୈଃ ।।୧୫୬।।

ବାମ କରରେ ଶିଖର ଓ ଦକ୍ଷିଣ କରରେ ତ୍ରିଶୂଳ ଧାରଣ କଲେ ନାଟ୍ୟଶାସ୍ତ୍ରବିଦ୍‌ଗଣ ତାହାକୁ ଶନିଗ୍ରହ କର କହନ୍ତି ।

## ରାହୁହସ୍ତଃ

ସର୍ପଶୀର୍ଷୋ ବାମକରେ ସୂଚୀ ସ୍ୟାଦ୍ଦକ୍ଷିଣେ କରେ ।
ରାହୁଗ୍ରହକରଃ ପ୍ରୋକ୍ତୋ ନାଟ୍ୟବିଦ୍ୟାଧିପୈର୍ଜନୈଃ ।।୨୫୭।।

ବାମ କରରେ ସର୍ପଶୀର୍ଷ ଓ ଦକ୍ଷିଣ କରରେ ସୂଚୀ—ନାଟ୍ୟବିଦ୍ୟାଧିପଗଣ କର୍ତ୍ତୃକ ଏହା ରାହୁଗ୍ରହ କର ନାମରେ କଥିତ ।

## କେତୁହସ୍ତଃ

ବାମେ କରେ ତୁ ସୂଚୀ ସ୍ୟାଦ୍ଦକ୍ଷିଣେ ତୁ ପତାକକା ।
କେତୁଗ୍ରହକରଃ ପ୍ରୋକ୍ତୋ ଭରତାଗମଦର୍ଶିଭିଃ ।।୨୫୮।।

ବାମକରରେ ସୂଚୀ ଓ ଦକ୍ଷିଣ କରରେ ପତାକା—ଭରତ ନାଟ୍ୟ ଶାସ୍ତ୍ରଜ୍ଞଙ୍କଦ୍ୱାରା ଏହା କେତୁଗ୍ରହ କର ବୋଲି କଥିତ ।

## ପାଦଭେଦାଃ

ବକ୍ଷ୍ୟତେ ପାଦଭେଦାନାଂ ଲକ୍ଷଣଂ ପୂର୍ବ ସମ୍ମତମ୍ ।
ମଣ୍ଡଳୋତ୍ପ୍ଳବନେ ଚୈବ ଭ୍ରମରୀ ପାଦଚାରିକା ।।୨୫୯।।
ଚତୁର୍ଦ୍ଧା ପାଦଭେଦାଃ ସ୍ୟୁସ୍ତେଷାଂ ଲକ୍ଷଣମୁଚ୍ୟତେ ।

ପୂର୍ବସମ୍ମତ ଲକ୍ଷଣ ଅନୁସାରେ ପାଦଭେଦ ଗୁଡ଼ିକର ବର୍ଣ୍ଣନା କରାଯାଉଅଛି । ମଣ୍ଡଳ, ଉତ୍ପ୍ଳବନ, ଭ୍ରମରୀ ଓ ପାଦ-

ଶ୍ୱିକା, ଏହି ଗୃହପ୍ରକାର ପାଦଭେଦର ଲକ୍ଷଣ ବର୍ଣ୍ଣନା କରା ଯାଉଅଛି ।

## ମଣ୍ଡଳଭେଦାଃ

ସ୍ଥାନକଂ ଗୃଯୂତାଳୀଢ଼ଂ ପ୍ରେଙ୍ଖଣ ପ୍ରେରିତାନି ଚ ।।୨୭୨।।
ପ୍ରତ୍ୟାଳୀଢ଼ଂ ସ୍ୱସ୍ତିକଂଚ ମୋଟିତଂ ସମସୂଚିକା ।
ପାର୍ଶ୍ୱସୂଚୀତି ଚ ଦଶ ମଣ୍ଡଳାନ୍ୟଭିତାନୀହ ।।୨୭୧।।

ସ୍ଥାନକ, ଆଯୂତ, ଆଳୀଢ଼, ପ୍ରେଙ୍ଖଣ, ପ୍ରେରିତ, ପ୍ରତ୍ୟାଳୀଢ଼, ସ୍ୱସ୍ତିକ, ମୋଟିତ, ସମସୂଚୀ ଓ ପାର୍ଶ୍ୱସୂଚୀ—ଏହି ଦଶପ୍ରକାର ମଣ୍ଡଳ କଥିତ ହୋଇଅଛି ।

## ସ୍ଥାନକମଣ୍ଡଳମ୍

କଟିଂ ସ୍ପୃଷ୍ଟ୍ୱାର୍ଦ୍ଧଚନ୍ଦ୍ରାଖ୍ୟପାଣିଭ୍ୟାଂ ସମପାଦତଃ ।
ସମରେଖତୟା ତିଷ୍ଠେତ୍ ତତ୍‌ସ୍ୟାତ୍ ସ୍ଥାନକମଣ୍ଡଳମ୍ ।।୨୭୨।।

ସମପାଦ ଭଙ୍ଗୀରେ ସମରେଖାରେ ଥାଇ ଉଭୟହସ୍ତରେ ଅର୍ଦ୍ଧଚନ୍ଦ୍ର ଧାରଣ କରି କଟୀ ସ୍ପର୍ଶକଲେ ତାହା ସ୍ଥାନକମଣ୍ଡଳ ହୁଏ ।

## ଆଯୂତମଣ୍ଡଳମ୍

ବିତସ୍ତ୍ୟନ୍ତରିତୌ ପାଦୌ କୃତ୍ୱାତୁ ଚତୁରସ୍ରକୌ
ତିର୍ଯ୍ୟକ୍ କୁଞ୍ଚିତଜାନୁଭ୍ୟାଂ ସ୍ଥିତିରାଯୂତମଣ୍ଡଳମ୍ ।।୨୭୩।।

ଏକ ବିତା ଅନ୍ତରରେ ପାଦଦ୍ୱୟକୁ ସ୍ଥାପନ କରି ଚଉକ ଭଙ୍ଗୀରେ ଜାନୁଦ୍ୱୟ ତିର୍ଯ୍ୟକ୍ ଭାବରେ କୁଞ୍ଚିତ ହୋଇ ଅବସ୍ଥିତ ହେଲେ ଆଯୂତମଣ୍ଡଳ ହୁଏ ।

## ଆଳୀଢ଼ମଣ୍ଡଳମ୍

ଦକ୍ଷିଣାଙ୍ଘ୍ରେସ୍ତୁ ପୁରତଃ ବିତସ୍ତିତ୍ରିତୟାନ୍ତରମ୍
ବିନ୍ୟସେଦ୍ ବାମପାଦଂ ଚ ଶିଖରଂ ବାମ୍ପାଣିନା ।।୨୭୪।

କଟକାମୁଖହସ୍ତଶ୍ଚ ଦକ୍ଷିଣେନ ଧୃତୋ ଯଦା ।
ଆଲୀଢ଼ମଣ୍ଡଳମିତି ବିଖ୍ୟାତଂ ଭରତାଦିଭିଃ ॥୨୬୫॥

ଦକ୍ଷିଣ ପାଦର ସମ୍ମୁଖରେ ତିନ ବିତା ଅନ୍ତରରେ ବାମ ପାଦକୁ ସ୍ଥାପନ କରି ଯଦି ବାମହସ୍ତରେ ଶିଖର ଓ ଦକ୍ଷିଣ ହସ୍ତରେ କଟକାମୁଖ ଧାରଣ କରାଯାଏ ତାହାକୁ ଭରତାଦି ଆଲୀଢ଼ମଣ୍ଡଳ କହନ୍ତି ।

## ପ୍ରତ୍ୟାଲୀଢ଼ମଣ୍ଡଳମ୍

ଆଲୀଢ଼ସ୍ୟ ବିପର୍ଯ୍ୟାସାତ୍ ପ୍ରତ୍ୟାଲୀଢ଼ାଖ୍ୟମଣ୍ଡଳମ୍ ।

ଆଲୀଢ଼ର ବିପରୀତ (ଭଙ୍ଗୀ)କୁ ପ୍ରତ୍ୟାଲୀଢ଼ମଣ୍ଡଳ କହନ୍ତି ।

## ପ୍ରେଙ୍ଖଣମଣ୍ଡଳମ୍

ପ୍ରସୃତୈକପଦଂ ପାର୍ଶ୍ୱେ ପାର୍ଷ୍ଣିଦେଶସ୍ୟପାଦତଃ ॥୨୬୬॥
ସ୍ଥିତ୍ୱାଽନ୍ୟେ କୂର୍ମହସ୍ତେନ ସ୍ଥିତିଃ ପ୍ରେଙ୍ଖଣ ମଣ୍ଡଳମ୍ ।

ଏକପାଦର ଗୋଇଠି ପାର୍ଶ୍ୱରେ ଅନ୍ୟପାଦକୁ ପ୍ରସାରି କରି କୂର୍ମହସ୍ତ ଧାରଣ କରି ରହିଲେ ତାହା ପ୍ରେଙ୍ଖଣମଣ୍ଡଳ ହୁଏ ।

## ପ୍ରେରିତମଣ୍ଡଳମ୍

ସନ୍ତାଡ୍ୟୈକଂ ପଦଂ ପାର୍ଶ୍ୱେ ବିତସ୍ତି ତ୍ରିତୟାନ୍ତରମ୍ ॥୨୬୭॥

ତିର୍ଯ୍ୟକ୍ କୁଞ୍ଚିତଜାନୁଭ୍ୟାଂ ସ୍ଥିତ୍ୱାଽଥ ଶିଖରଂ କରମ୍
ବିଧାୟ ବକ୍ଷସ୍ୟନ୍ୟେନ ପ୍ରସୃତା ଚ ପତାକିକା ॥୨୬୮

ପ୍ରଦର୍ଶୟେଦ୍‌ଯଦିଦଂ ତଜ୍ଜ୍ଞା ପ୍ରେରିତଂ ମଣ୍ଡଳଂ ଜଗୁଃ ।

ଏକପଦରେ ଅନ୍ୟପଦର ପାର୍ଶ୍ୱ (ଭୂମି)କୁ ଆଘାତ କରି ତିନ ବିତା ଅନ୍ତରରେ ଜାନୁଦ୍ୱୟକୁ ତିର୍ଯ୍ୟକ୍ ଭାବରେ କୁଞ୍ଚିତ କରି,

ଏକ ହସ୍ତର ଶିଖର କର ଧାରଣ କରି ପତାକାହସ୍ତକୁ ବକ୍ଷ ଦେଶରୁ ପ୍ରସାର କଲେ ତାହା ପ୍ରେରିତ ମଣ୍ଡଳ ହୁଏ ।

## ସ୍ୱସ୍ତିକମଣ୍ଡଳମ୍

ଦକ୍ଷିଣୋତ୍ତରତଃ କୂର୍ମୀତ୍ ପାଦେ ପାଦଂ କରେ କରମ୍ ।।୨୬୯।।
ବ୍ୟାତ୍ୟାସେନ ତଦା ପ୍ରୋକ୍ତଂ ସ୍ୱସ୍ତିକଂ ନାମ ମଣ୍ଡଳମ୍ ।

ଦକ୍ଷିଣ ପାଦରେ ବାମପାଦକୁ ଛନ୍ଦି ଓ ଦକ୍ଷିଣ କରରେ ବାମହସ୍ତକୁ ଛନ୍ଦି ରଖିଲେ ତାହା ସ୍ୱସ୍ତିକମଣ୍ଡଳ ନାମରେ କଥିତ ହୁଏ ।

## ମୋଟିତମଣ୍ଡଳମ୍

ପ୍ରାଦପଭ୍ୟାଂ ଭୁବ ସ୍ଥିତ୍ୱା ଜାନୁଯୁଗ୍ମେନ ସଂସ୍ପୃଶେତ୍ ।।୨୭୦।।
ନ୍ମାତ୍ ଭୂତଳମେକୈକଂ ତ୍ରିପତାକକରଦ୍ୱୟମ୍ ।
କୃତ୍ୱା ତନ୍ମୋଟିତଂ ନାମ ମଣ୍ଡଳଂ କଥିତଂ ବୁଧୈଃ ।।୨୭୧।।

ଭୂମିରେ, ପାଦଦ୍ୱୟର ଅଗ୍ରଭାଗରେ ଅବସ୍ଥାନ କରି ଜାନୁଦ୍ୱୟକୁ ଏକ ଏକ କରି ଭୂତଳକୁ ସ୍ପର୍ଶ କରାଇ କରଦ୍ୱୟରେ ତ୍ରିପତାକ ଧାରଣ କଲେ ତାହାକୁ ମୋଟିତ ମଣ୍ଡଳ ବୋଲି ଜ୍ଞାନୀଗଣ କହନ୍ତି ।

## ସମସୂଚୀମଣ୍ଡଳମ୍

ପାଦାଗ୍ରାଭ୍ୟାଂ ଚ ଜାନୁଭ୍ୟାଂ ଭୂତଳଂ ସଂସ୍ପୃଶେଦ୍ୟଦି
ମଣ୍ଡଳଂ ସମସୂଚୀତି କଥିତଂ ପୂର୍ବସୂରିଭିଃ ।।୨୭୨।।

ପାଦାଗ୍ର ଦ୍ୱୟରେ ବା ଜାନୁଦ୍ୱୟରେ ଭୂତଳକୁ ସ୍ପର୍ଶକଲେ ପୂର୍ବପଣ୍ଡିତଗଣ ତାହାକୁ ସମସୂଚୀମଣ୍ଡଳ କହନ୍ତି ।

## ପାର୍ଶ୍ୱସୂଚୀମଣ୍ଡଳମ୍

ସ୍ଥିତ୍ୱା ପାଦାଗ୍ରଯୁଗ୍ମେନ ଜାନୁନୈକେନ ପାର୍ଶ୍ୱତଃ ।
ସ୍ପୃଶେଦ୍ ଭୂତଳଂ ପାର୍ଶ୍ୱସୂଚୀମଣ୍ଡଳମୀରିତମ୍ ।।୨୭୩।।

ପଦଦ୍ୱୟର ଅଗ୍ରଭାଗରେ ରହି ଏକ ଜାନୁରେ ଭୂତଳକୁ ସ୍ପର୍ଶକଲେ ତାହା ପାର୍ଶ୍ୱସୂଚୀମଣ୍ଡଳ ବୋଲି କଥିତ ହୁଏ ।

## ସ୍ଥାନକଭେଦାଃ

ପାଦବିନ୍ୟାସଭେଦେନ ସ୍ଥାନକଂ ଷଡ୍‌ବିଧଂ ଭବେତ୍ ।
ସମପାଦଂ ଚୈକପାଦଂ ନାଗବନ୍ଧସ୍ତତଃ ପରମ୍ ।।୨୭୪।।
ଐନ୍ଦ୍ରଂ ଚ ଗରୁଡ଼ଂ ଚୈବ ବ୍ରହ୍ମସ୍ଥାନମିତିକ୍ରମାତ୍ ।

ପାଦବିନ୍ୟାସ ଭେଦରେ ସ୍ଥାନକ ଛଅ ପ୍ରକାର--- କ୍ରମାନ୍ୱୟରେ ଏ ଗୁଡ଼ିକ ସମପାଦ, ଏକପାଦ, ନାଗବନ୍ଧ, ଐନ୍ଦ୍ର, ଗରୁଡ଼ ଓ ବ୍ରହ୍ମସ୍ଥାନ ଅଟନ୍ତି ।

### ସମପାଦସ୍ଥାନମ୍

ସ୍ଥିତିଃ ସମାଭ୍ୟାଂ ପାଦାଭ୍ୟାଂ ସମପାଦମିତି ସ୍ମୃତମ୍ ।।୨୭୫।।

ପାଦଦ୍ୱୟ ସମଭାବରେ ସ୍ଥାପିତ ହେଲେ ତାହା ସମପାଦ ନାମରେ କଥିତ ହୁଏ ।

### ବିନିଯୋଗଃ

ପୁଷ୍ପାଞ୍ଜଲୌ ଦେବରୂପେ ସମପାଦଂ ନିଯୁଜ୍ୟତେ ।

ପୁଷ୍ପାଞ୍ଜଳି ଓ ଦେବରୂପରେ ସମପାଦର ବ୍ୟବହାର ହୁଏ ।

### ଏକପାଦସ୍ଥାନମ୍

ଜାନ୍ୱାଶ୍ରିତ୍ୟ ପଦୈକେନ ସ୍ଥିତିଃ ସ୍ୟାଦେକପାଦକମ୍ ।।୨୭୬।।

ଏକପାଦକୁ ଜାନୁଦେଶରେ ସ୍ଥାପନପୂର୍ବକ ଅବସ୍ଥିତ ଏକପାଦ ହୁଏ ।

## ବନଯୋଗଃ

ଏକପାଦଂ ଭ୍ବିଦଂ ସ୍ଥାନଂ ନଶ୍ଚଲେ ତପସି ସ୍ମୃତମ୍ ।

ଏହି ଏକପାଦ ସ୍ଥାନ ନଶ୍ଚଳ ଓ ତପସ୍ୟା ଅର୍ଥରେ ବନଯୋଗ ହୁଏ ।

## ନାଗବନ୍ଧସ୍ଥାନମ୍

ପାଦଂପାଦେନ ସଂବେଷ୍ଟ୍ୟ ତଥା ପାଣ୍ଡିଂ ଚ ପାଣିନା ।।୨୭୭।।
ସ୍ଥିତିଃ ସ୍ୟାନ୍ନାଗବନ୍ଧାଖ୍ୟା ନାଗବନ୍ଧେ ପ୍ରଯୁଜ୍ୟତେ ।

ପାଦରେ ପାଦକୁ ତଥା ହାତରେ ହାତକୁ ବେଷ୍ଟନ କଲେ ନାଗବନ୍ଧ ସ୍ଥାନ ହୁଏ । ନାଗବନ୍ଧ ପ୍ରଦର୍ଶନରେ ଏହାର ପ୍ରୟୋଗ ହୁଏ ।

## ଐନ୍ଦ୍ରକସ୍ଥାନମ୍

ପାଦମେକଂ ସମାକୁଞ୍ଚ୍ୟ ସ୍ଥିତ୍ୱାଽନ୍ୟପଦଜାନୁନି ।।୨୭୮।।
ଉତ୍ତାନତେ କରଂ ନ୍ୟସ୍ୟ ସ୍ଥିତିରୈନ୍ଦ୍ରମିତୀରିତମ୍ ।

ଏକପାଦକୁ କୁଞ୍ଚନ କରି ଅନ୍ୟପାଦର ଜାନୁରେ ସ୍ଥାପନ କରି ଉତ୍ତାନତ (ହାତର ପାପୁଲିକୁ ସମ୍ମୁଖ କରି) କରନ୍ୟାସ କଲେ ତାହା ଐନ୍ଦ୍ରକ ସ୍ଥାନ ବୋଲି କଥିତ ।

## ବନଯୋଗଃ

ବାସବେ ରାଜଭାବେ ଚ ସ୍ଥାନମୈନ୍ଦ୍ରଂ ନିଯୁଜ୍ୟତେ ।।୨୭୯।।

ଇନ୍ଦ୍ର ଓ ରାଜାଭାବରେ ଐନ୍ଦ୍ର ସ୍ଥାନର ପ୍ରୟୋଗ ହୁଏ ।

## ଗରୁଡସ୍ଥାନକମ୍

ଆଲୀଢ଼ମଣ୍ଡଳେ ପୃଷ୍ଠାଦଥ ଜାନୁତଳଂ ଭୁବି ।
ସଂସ୍ଥାପ୍ୟ ପାଣିଯୁଗ୍ମେନ ବହନ୍ ବରଳ ମଣ୍ଡଳମ୍
(ଗରୁଡ଼ହସ୍ତକମ୍) ।।୨୮ ।।
ସ୍ଥିତିସ୍ତୁ ଗରୁଡ଼ ସ୍ଥାନଂ ଗରୁଡ଼େ ବିନଯୁଜ୍ୟତେ ।

ଆଲୀଢ଼ ମଣ୍ଡଳ ପରେ ଯଦି ଏକ ଜାନୁକୁ ଭୂମିରେ ସ୍ଥାପନ ପୂର୍ବକ ଉଭୟ ହସ୍ତରେ ବରଳମଣ୍ଡଳ (ଗରୁଡହସ୍ତ ?) ଧାରଣ କରାଯାଏ, ଏହି ସ୍ଥିତି ଗରୁଡ଼ମଣ୍ଡଳ ହୁଏ । ଗରୁଡ଼ ପ୍ରଦର୍ଶନରେ ଏହାର ପ୍ରୟୋଗ ହୁଏ ।

## ବ୍ରହ୍ମସ୍ଥାନମ୍

ଜାନୂପରି ପଦଂ ନ୍ୟସ୍ୟ ପଦସ୍ୟୋପରି ଜାନୁଚ ।।୨୮୨।।
ସ୍ଥିତଂ ଯଦି ଭବେଦ୍ ବ୍ରହ୍ମଂ ଜପାଦିଷୁ ନିଯୁଜ୍ୟତେ ।

ଜାନୁ ଉପରେ ପାଦକୁ ନ୍ୟାସ କରି, ପାଦଉପରେ ଜାନୁ ନ୍ୟାସ କରି ଅବସ୍ଥିତ ହେଲେ ବ୍ରହ୍ମସ୍ଥାନକ ହୁଏ । ଜପାଦି କାର୍ଯ୍ୟରେ ଏହା ପ୍ରଯୁକ୍ତ ହୁଏ ।

# ଉତ୍ପ୍ଳବନଭେଦାଃ

ଅଥୋତ୍ପ୍ଳୁତଭେଦାନାଂ ଲକ୍ଷଣଂ ପରିକଥ୍ୟତେ ।।୨୮୨।।

ଅଲଗଂ କର୍ତ୍ତରୀ ଚୈବାଶ୍ୱୋତ୍ପ୍ଳବନଂ ମୋଟିତଂ ତଥା ।
କୃପାଲଗମିତି ଖ୍ୟାତଂ ପଞ୍ଚଧୋତ୍ପ୍ଳବନଂ ବୁଧୈଃ ।।୨୮୩।।

ଏହାପରେ ଉତ୍ପ୍ଳବନଭେଦଗୁଡ଼ିକର ଲକ୍ଷଣ କୁହାଯାଉ ଅଛି । ଅଲଗ, କର୍ତ୍ତରୀ, ଅଶ୍ୱ, ମୋଟିତ ଓ କୃପାଲଗ, ଏହି ପାଞ୍ଚ-ପ୍ରକାର ଉତ୍ପ୍ଳବନ ଜ୍ଞାନୀଜନମାନଙ୍କ ମଧ୍ୟରେ ଖ୍ୟାତ ।

## ଅଳଗୋପ୍ଲଚନମ୍

ଉତ୍ପ୍ଲୁତ୍ୟ ପାର୍ଶ୍ୱଯୁଗଳଂ କଟିଦେଶେ ତୁ ବିନ୍ୟସେତ୍ ।
ବଦ୍ଧ୍ୱା କରଭ୍ୟାଂ ଶିଖରୌ ଅଳଗୋପ୍ଲବନଂ ଭବେତ୍ ।।୨୮୪।।

ଉଭୟ ପାର୍ଶ୍ୱଦେଶରେ ଲମ୍ଫ ପ୍ରଦାନ କରି କଟିର ପାର୍ଶ୍ୱ-ଦ୍ୱୟରେ ଶିଖର ହସ୍ତଦ୍ୱୟ ସ୍ଥାପନ କଲେ ତାହା ଅଳଗ ଉତ୍ପ୍ଲବନ ହୁଏ ।

## ଉତ୍ପ୍ଲବନକର୍ତ୍ତରୀ

ଉତ୍ପ୍ଲୁତ୍ୟ ପ୍ରପଦୈଃ ସବ୍ୟପାଦସୈକସ୍ୟ ପୃଷ୍ଠତଃ ।
କର୍ତ୍ତରୀ ବିନ୍ୟସେଦେଷା ସ୍ୟାଦୁତ୍ପ୍ଲବନ କର୍ତ୍ତରୀ ।।୨୮୫।।
ଅଧୋମୁଖଂ ଚ ଶିଖରଂ କଟୌହସ୍ତଂ ନ୍ୟସେଦ୍ୱହ ।

ପାଦର ଅଗ୍ରଭାଗରେ ଲମ୍ଫ ପ୍ରଦାନ କରି ଦକ୍ଷିଣ ପାଦର ପୃଷ୍ଠଭାଗରେ କର୍ତ୍ତରୀହସ୍ତ ବିନ୍ୟାସ କରି ବାମହସ୍ତରେ ଅଧୋମୁଖ ଶିଖର ହସ୍ତ କଟୀରେ ସ୍ଥାପନ କଲେ ତାହା ଉତ୍ପ୍ଲବନକର୍ତ୍ତରୀ ହୁଏ ।

## ଅଶ୍ୱୋପ୍ଲବନମ୍

ପୁରଃପାଦଂ ସମୁତ୍ପ୍ଲୁତ୍ୟାପଶ୍ଚାତ୍ପାଦଂ ନୟୋଜୟେତ୍ ।।୨୮୬।।
କରୌତୁ ତ୍ରିପତାକାଖ୍ୟୌ କୃତ୍ୱାଽଶ୍ୱୋତ୍ପ୍ଲବନଂ ଭବେତ୍ ।

ଆଗପାଦରେ ଲମ୍ଫପ୍ରଦାନ କରି ପଛପାଦ ତା ସହିତ ଯୋଜନା କଲେ ଏବଂ ହସ୍ତଦ୍ୱୟରେ ତ୍ରିପତାକା ଧାରଣ କଲେ ତାହା ଅଶ୍ୱୋତ୍ପ୍ଲବନ ହୁଏ ।

## ମୋଟିତୋତ୍ପ୍ଲବନମ୍

ପର୍ଯ୍ୟାୟପାର୍ଶ୍ୱୋତ୍ପ୍ଲବନଂ କର୍ତ୍ତରୀବତ୍ତୁ ମୋଟିତା ।।୨୮୭।।
ତ୍ରିପତାକେ ଚ କରୟୋଃ କୃତ୍ୱା ଶଶ୍ୱତ୍ ପ୍ରକାଶନାତ୍ ।

ପର୍ଯ୍ୟାୟ କ୍ରମରେ ଉଭୟ ପାର୍ଶ୍ୱରେ କର୍ତ୍ତରୀ ଭଳି ଲମ୍ଫପ୍ରଦାନ କରି ଉଭୟ କରରେ ତ୍ରିପତାକା ଧାରଣ ପୂର୍ବକ ବାରମ୍ବାର ପ୍ରକାଶ କଲେ ତାହା ମୋଟିତ ଉତ୍ପ୍ଲବନ ହୁଏ ।

## କୃପାଲଗୋତ୍ପ୍ଲବନମ୍

ପାର୍ଷ୍ଣିମେକୈକପାଦସ୍ୟ କଟ୍ୟୌ ପର୍ଯାୟତୋ ନ୍ୟସେତ୍ ॥୨୮୮॥
ଅର୍ଦ୍ଧଚନ୍ଦ୍ରକଳାମଧ୍ୟେ ନ୍ୟସ୍ତମନ୍ୟତ୍ କୃପାଲଗମ୍ ।

ଏକ ଏକ ପାଦର ଗୋଇଠି କଟିଭାଗ (ନିତମ୍ବ)ରେ ପର୍ଯ୍ୟାୟ କ୍ରମରେ ନ୍ୟାସ କରି, ପରେ ଅର୍ଦ୍ଧଚନ୍ଦ୍ରକଳା ମଧ୍ୟରେ ନ୍ୟାସ କଲେ କୃପାଲିକ ଉତ୍ପ୍ଲବନ ହୁଏ ।

# ଭ୍ରମରୀ ଲକ୍ଷଣମ୍

ଭ୍ରମର୍ଯ୍ୟା ଲକ୍ଷଣାନ୍ୟତ୍ର ବକ୍ଷ୍ୟେ ଲକ୍ଷଣଭେଦତଃ ॥୨୮୯॥

ଉତ୍ପ୍ଲୁତଭ୍ରମରୀ ଚକ୍ରଭ୍ରମରୀ ଗରୁଡ଼ାଭିଧା
ତଥୈକପାଦଭ୍ରମରୀ କୁଞ୍ଚିତଭ୍ରମରୀ ତଥା ॥୨୯୦॥

ଆକାଶଭ୍ରମରୀ ଚୈବ ତଥାଙ୍ଗଭ୍ରମରୀତି ଚ ।
ଭ୍ରମର୍ଯ୍ୟଃ ସପ୍ତବିଜ୍ଞେୟା ନାଟ୍ୟଶାସ୍ତ୍ରବିଶାରଦୈଃ ॥୨୯୧॥

ଭ୍ରମରୀର ନାନାବିଧ ଲକ୍ଷଣ ଏଠାରେ କୁହାଯାଉଅଛି । ଉତ୍ପ୍ଲୁତଭ୍ରମରୀ, ଚକ୍ରଭ୍ରମରୀ, ଗରୁଡ଼ଭ୍ରମରୀ, ଏକପାଦଭ୍ରମରୀ, କୁଞ୍ଚିତଭ୍ରମରୀ ଆକାଶଭ୍ରମରୀ ତଥା ଅଙ୍ଗଭ୍ରମରୀ – ଲକ୍ଷଣଭେଦରେ ଏହି ସାତପ୍ରକାର ଭ୍ରମରୀନାଟ୍ୟଶାସ୍ତ୍ରବିଶାରଦଗଣ କର୍ତ୍ତୃକ କୁହାଯାଇଅଛି ।

## ଉତ୍ପ୍ଲୁତ ଭ୍ରମରୀ

ସ୍ଥିତ୍ୱା ସମାଭ୍ୟାଂ ପାଦାଭ୍ୟାମୁତ୍ପ୍ଲୁତ୍ୟ ଭ୍ରାମୟେଦ୍ୟଦି ।
ସର୍ବାଙ୍ଗମନ୍ତରାଳେ ସ୍ୟାଦୁତ୍ପ୍ଲୁତଭ୍ରମରୀ ତ୍ୱସୌ ॥୨୯୨॥

ସମପାଦଭଙ୍ଗୀରେ ରହି ପଦଦ୍ୱୟରେ ଲମ୍ଫପ୍ରଦାନ କରି ଶରୀରର ସମାନ୍ତରାଳ ଭାବରେ ବୁଲିଲେ ତାହା ଉତ୍ପ୍ଲୁତ ଭ୍ରମରୀ ହୁଏ ।

## ଚକ୍ରଭ୍ରମରୀ

ଭୂବି ପାଦୌ ମୁହୁଃ କର୍ଷଂ ସ୍ତ୍ରିପତାକୌ କରୌ ବହନ୍ ।
ଚକ୍ରବଦ୍ଭ୍ରମତେ ଯତ୍ର ସା ଚକ୍ରଭ୍ରମରୀ ଭବେତ୍ ।।୨୯୩।।

ପାଦଦ୍ୱୟ ଭୂମିରେ ମୁହୁର୍ମୁହୁ ଆକୃଷ୍ଟ କରି ଉଭୟ ହସ୍ତରେ ତ୍ରିପତାକା ଧାରଣ ପୂର୍ବକ ଚକ୍ରପରି ଭ୍ରମଣ କଲେ ତାହା ଚକ୍ରଭ୍ରମରୀ ହୁଏ ।

## ଗରୁଡ଼ଭ୍ରମରୀ

ତିର୍ଯ୍ୟକ୍ପ୍ରସାର୍ଯ୍ୟୈକପାଦଂ ପଶ୍ଚାଜ୍ଜାନୁ ଭୂବିକ୍ଷିପେତ୍ ।
ସମ୍ୟକ୍ ପ୍ରସାର୍ଯ୍ୟ ବାହୁଦ୍ୱୌ ଭ୍ରାମୟେଦ୍ ଗରୁଡ଼ୋ ଭବେତ୍ ।।୨୯୪

ଏକପାଦକୁ ତିର୍ଯ୍ୟକ୍ଭାବରେ ପ୍ରସାର କରି ପଶ୍ଚାତ୍ଭାଗରେ ଜାନୁକୁ ଭୂମିରେ କ୍ଷେପଣ କରି, ବାହୁଦ୍ୱୟକୁ ଅଳ୍ପପ୍ରସାର କରି ବୁଲାଇଲେ ତାହା ଗରୁଡ଼ ଭ୍ରମରୀ ହୁଏ ।

## ଏକପାଦଭ୍ରମରୀ

ଭ୍ରାମୟେଦେକମେକେନ ପାଦଂ ପାଦେନ ସତ୍ୱରମ୍
ସା ତ୍ୱେକପାଦ ଭ୍ରମରୀ ଭବେଦ୍ଧନ୍ତ ବିନିଶ୍ଚିତା ।।୨୯୫।।

ଏକପାଦଦ୍ୱାରା ଅପରପାଦ ସତ୍ୱର ବୁଲାଇଲେ ତାହା ଏକପାଦ ଭ୍ରମରୀ ହୁଏ । ଏହା ସୁନିଶ୍ଚିତ ।

## କୁଞ୍ଚିତ ଭ୍ରମରୀ

ନିକୁଞ୍ଚ୍ୟ ଜାନୁଭ୍ରମଣଂ କୁଞ୍ଚିତଭ୍ରମରୀ ଭବେତ୍

ଜାନୁଦ୍ୱୟକୁ କୁଞ୍ଚନ କରି ବୁଲିବାର ନାମ କୁଞ୍ଚିତଭ୍ରମରୀ ।

## ଆକାଶଭ୍ରମରୀ

ଉତ୍ପ୍ଲୁତ୍ୟ ପାଦୌ ବିରଳୌ କୃତ୍ୱା ପାଦୌ ପ୍ରସାର୍ଯ୍ୟ ଚ ।।୨୯୫
ଭ୍ରାମୟେତ୍ ସକଳଂ ଗାତ୍ରମାକାଶଭ୍ରମରୀ ଭବେତ୍ ।

ଲମ୍ଫଦାନ ପୂର୍ବକ ପାଦଦ୍ୱୟକୁ ଭିନ୍ନ ଓ ପ୍ରସାର କରି ସମସ୍ତ ଶରୀରକୁ ବୁଲାଇଲେ ତାହା ଆକାଶଭ୍ରମରୀ ହୁଏ ।

## ଅଙ୍ଗଭ୍ରମରୀ

ବିତସ୍ତ୍ୟନ୍ତରିତୌ ପାଦୌ କୃତ୍ୱାଙ୍ଗଭ୍ରମଣଂ ତଥା ।।୨୯୭।।
ଛିନ୍ନେଦ୍ ଯତ୍ର ଭବେଦଙ୍ଗଭ୍ରମରୀ ଭରତୋଦିତା ।

ଏକବିତା ଅନ୍ତରରେ ପାଦଦ୍ୱୟକୁ ରଖି ଅଙ୍ଗକୁ ବୁଲାଇଲେ ତାହା ଭରତଙ୍କ କଥିବାନୁସାରେ ଅଙ୍ଗଭ୍ରମରୀ ହୁଏ ।

## ଚାରିଭେଦାଃ

ଅଥାଥ ଚାରିଭେଦାନାଂ ଲକ୍ଷଣଂ କଥ୍ୟତେ ମୟା ।।୨୯୮।।

ଆଦୌ ତୁ ଚଳନଂ ପ୍ରୋକ୍ତଂ ପଶ୍ଚାଚ୍ଚଂକ୍ରମଣଂ ତଥା ।
ଶରଣଂ ବେଗିନୀ ଚୈବ କୁଟ୍ଟନଂ ଚ ତତଃ ପରମ୍ ।।୨୯୯।।

ଲୁଠିତଂ ଲୋଳିତଂ ଚୈବ ତତୋ ବିଷମସଞ୍ଚରଃ ।
ଚାରିଭେଦା ଅମୀ ଅଷ୍ଟୌ ପ୍ରୋକ୍ତା ଭରତବେଦିଭିଃ ।।୩୦୦।।

ଏହାପରେ ଏଠାରେ ମୋଦ୍ୱାରା ଚାରି ଭେଦର ଲକ୍ଷଣ ବର୍ଣ୍ଣିତ ହେଉଛି । ପ୍ରଥମରେ ଚଳନ ଓ ପରେ ଚଂକ୍ରମଣ, ସରଣ, ବେଗିନୀ, କୁଟ୍ଟନ, ଲୁଠିତ, ଲୋଳିତ ଏବଂ ବିଷମ ସଞ୍ଚର—ଭରତ-ଶାସ୍ତ୍ରଗୁଡ଼ିକ ଏହି ଆଠପ୍ରକାର ଚାରିର ଉଲ୍ଲେଖ କରିଛନ୍ତି ।

## ଚଲନଗ୍ରୀ

ସ୍ୱସ୍ଥାନାତ୍ ସ୍ୱସ୍ୟ ପାଦସ୍ୟ ଚଳନାଚ୍ଚଳନଂ ଭବେତ୍ ।
ସ୍ୱସ୍ଥାନରେ ନିଜ ପାଦ ଚାଳନା କଲେ ଚଳନଗ୍ରୀ ହୁଏ ।

## ଚଂକ୍ରମଣମ୍

ପାଦଯୋର୍ବାହ୍ୟପାର୍ଶ୍ୱାଭ୍ୟାମୁତ୍କ୍ଷିପ୍ୟୋତ୍କ୍ଷିପ୍ୟ ଯତ୍ନତଃ ।।୩୦୧।।
ଗତିର୍ବିଚଙ୍କ୍ରମଣଂ ବର୍ଣ୍ଣିତଂ ନାଟ୍ୟ କୋବିଦୈଃ ।

ଦୁଇ ପାଦକୁ ଉଭୟ ପାର୍ଶ୍ୱରେ ଉଠାଇ ଉଠାଇ ଅତି ଯତ୍ନରେ ଗତିକଲେ ତାହାକୁ ନାଟ୍ୟ କୋବିଦଗଣ ଚଂକ୍ରମଣଗ୍ରୀ କହନ୍ତି ।

## ସରଣମ୍

ଚଳନଂ ତୁ ଜଳୁକାବଦେକେନାନ୍ୟସ୍ୟ ପାର୍ଷ୍ଣିନା ।।୩୦୨।।
ତିର୍ଯ୍ୟଗାକର୍ଷଯେଦ୍ ଭୂମିଂ କରାଭ୍ୟାଂ ତୁ ପତାକକେ ।
ଧୃତ୍ୱା ଚ ଗଗନଂ ଯୁକ୍ତ୍ୱ ସରଣଂ ତଦୁଦାହୃତମ୍ ।।୩୦୩।।

ଭୂମିକୁ ତିର୍ଯ୍ୟକ୍ ଭାବରେ ଆକର୍ଷଣ କରି ଏକପାଦର ଗୋଇଠିରେ ଅନ୍ୟପାଦକୁ ସଂଯୋଗ କରି ଯୋକ ଭଳି ଗତିକଲେ ଏବଂ ଉଭୟ ହସ୍ତରେ ପତାକାମୁଦ୍ରା ଧାରଣ କଲେ ତାହାକୁ ସରଣଗ୍ରୀ ବୋଲାଯାଏ ।

## ବେଗିନୀ

ପାର୍ଷ୍ଣିନା ବା ପଦାଗ୍ରେଣ ଦ୍ରୁତଂ ଗତ୍ୟା ତୁ ଚାଳନମ୍ ।
କରାଭ୍ୟାଂ ଚାଳପଦ୍ମେ ଚ ତ୍ରିପତାକେ ଯଥାକ୍ରମମ୍ ।।୩୦୪।।
ଧୃତ୍ୱା ନର୍ତ୍ତେଦ ଯଦି ଭବେଦ୍ ବେଗବତ୍ତ୍ୱେନ ବେଗିନୀ ।

ଗୋଇଠିରେ ବା ପଞ୍ଝାପରେ ଦ୍ରୁତଗତିରେ ଚଳି ଯଥାକ୍ରମରେ ହସ୍ତଦ୍ୱୟରେ ଅଳପଦ୍ମ ଓ ତ୍ରିପତାକା ଧାରଣ କରି ନୃତ୍ୟକଲେ ବେଗ ହେତୁରୁ ତାହା ବେଗିନୀଗ୍ରୀ ହୁଏ ।

## କୁଟ୍ଟନମ

ପାର୍ଷ୍ଣିନା ବା ପଦାଗ୍ରେଣ ସମଗ୍ରେନ ତଳେନ ବା ।।୩୦୫।।
ଯୂତ୍ତାଡନଂ ଭୂତଳସ୍ୟ କୁଟ୍ଟନଂ ତଦୁଦାହୃତମ୍ ।

ଗୋଇଠିରେ, ପଞ୍ଝାରେ ବା ସମସ୍ତ ପାଦରେ ଭୂମିକୁ ଆଘାତ କଲେ ତାହାକୁ କୁଟ୍ଟନଚାରୀ ବୋଲଯାଏ ।

## ଲୁଠିତମ୍

ସ୍ୱସ୍ତିକସ୍ଥିତପାଦାଗ୍ରେ କୁଟ୍ଟନାଲ୍ଲୁଠିତଂ ଭବେତ୍ ।।୩୬।।

ସ୍ୱସ୍ତିକାକାରରେ ଥିବା ପଦର ଅଗ୍ରଭାଗରେ କୁଟ୍ଟନ କଲେ ତାହା ଲୁଠିତ ଚାରୀ ହୁଏ ।

## ଲୋଳିତମ୍

ପୂର୍ବବତ୍ କୁଟ୍ଟନଂ କୃତ୍ୱା ମନ୍ଦ ମନ୍ଦମତଃ ପରମ୍ ।
ଅସ୍ପୃଷ୍ଟଭୂମେଃ ପାଦସ୍ୟ ଚାଳନ ଲୋଳିତ ଭବେତ୍ ।।୩୦୭।।

ପୂର୍ବପରି କୁଟ୍ଟନ କରି ଓ ପରେ ଭୂମିରେ ସ୍ପର୍ଶ ନ କରି ଧୀରେ ଧୀରେ ପଦଚାଳନା କଲେ ଲୋଳିତ ହୁଏ ।

## ବିଷମସଞ୍ଚରଃ

ବେଷ୍ଟୟିତ୍ୱା ଦକ୍ଷିଣେନ ବାମଂ ବାମେନ ଦକ୍ଷିଣମ୍ ।
କ୍ରମେଣ ପାଦଂ ବିନ୍ୟସ୍ୟ ଭବେଦ୍ ବିଷମସଞ୍ଚରଃ ।।୩୦୮।।

ଦକ୍ଷିଣପାଦରେ ବାମପାଦକୁ ଓ ବାମପାଦରେ ଦକ୍ଷିଣ ପାଦକୁ ବେଷ୍ଟନପୂର୍ବକ କ୍ରମାନୁଯାୟୀ ପଦବିନ୍ୟାସ କଲେ ବିଷମ ସଞ୍ଚରଚାରୀ ହୁଏ ।

# ଗତିଭେଦାଃ

ଅଥାତ୍ର ଗତିଭେଦାନାଂ ଲକ୍ଷଣଂ ବକ୍ଷ୍ୟତେ କ୍ରମାତ୍ ।
ହଂସୀ ମୟୂରୀ ଚ ମୃଗୀ ଗଜଲୀଳା ତୁରଙ୍ଗିଣୀ ।।୩୦୯।।
ସିଂହୀ ଭୁଜଙ୍ଗୀ ମଣ୍ଡୂକୀ ଗତିର୍ବୀରା ଚ ମାନବୀ ।
ଦଶୈତା ଗତୟୋ ଜ୍ଞେୟା ନାଟ୍ୟଶାସ୍ତ୍ର ବିଶାରଦୈଃ ।।୩୧୦।।

ଏହାପରେ ଏଠାରେ ଗତିଭେଦର ଲକ୍ଷଣ କ୍ରମାନୁସାରେ ବର୍ଣ୍ଣନା କରାଯାଉଅଛି । ହଂସୀ, ମୟୂରୀ, ମୃଗୀ, ଗଜଲୀଳା, ତୁରଙ୍ଗିଣୀ ସିଂହୀ, ଭୁଜଙ୍ଗୀ, ମଣ୍ଡୂକୀ, ବୀର ଓ ମାନବୀ— ନାଟ୍ୟଶାସ୍ତ୍ରବିଶାରଦଗଣଙ୍କ ମଧ୍ୟରେ ଏହି ଦଶଗତି ଜ୍ଞାତ ।

## ହଂସୀଗତିଃ

ପରିବର୍ତ୍ତ୍ୟ ତନୁଂ ପାର୍ଶ୍ୱଂ ବିତସ୍ତ୍ୟନ୍ତରିତଂ ଶନୈଃ ।
ଏକୈକଂ ତତ୍ ପଦଂ ନ୍ୟସ୍ୟ କପିତ୍ଥଂ କରଯୋର୍ବହନ୍ ॥୩୧୧
ହଂସବଦ୍‌ଗମନଂ ଯତ୍ର ସା ହଂସୀ ଗତିରୀରିତା ।

ଏକ ବିତା ଅନ୍ତରରେ ଗୋଟିଏ ଗୋଟିଏ ପାଦ ନ୍ୟାସ କରି ଉଭୟହସ୍ତରେ କପିତ୍ଥହସ୍ତ ଧାରଣ ପୂର୍ବକ ଆସ୍ତେ ଆସ୍ତେ ଶରୀରର ପାର୍ଶ୍ୱକୁ ଲେଉଟାଇ ହଂସପରି ଗତି କଲେ ତାହାକୁ ହଂସୀଗତି କୁହାଯାଏ ।

## ମୟୂରୀଗତିଃ

ପ୍ରପଦାଭ୍ୟାଂ ଭୁବସ୍ଥିତ୍ୱା କପିତ୍ଥଂ କରୟୋର୍ବହନ୍ ॥୩୧୨॥
ଏକୈକଜାନୁଚଲନାନ୍ମୟୂରୀ ଗତିରୀରିତା ।

ଗୋଇଠିର ପଞ୍ଝା ଉପରେ ଭୂମିରେ ରହି ଉଭୟ ହସ୍ତରେ କପିତ୍ଥ ଧାରଣ ପୂର୍ବକ ବିପରୀତ ଭାବରେ ଏକ ଏକ ଜାନୁ ଚଳନାକଲେ ତାହାକୁ ମୟୂରୀଗତି ବୋଲାଯାଏ ।

## ମୃଗୀଗତିଃ

ମୃଗବଦ୍ ଗମନଂ ବେଗାତ୍ ତ୍ରିପତାକ କରୌ ବହନ୍ ॥୩୧୩॥
ପୁରତଃ ପାର୍ଶ୍ୱୟୋଶ୍ଚୈବ ଯାନଂ ମୃଗଗତିର୍ଭବେତ୍ ।

ହସ୍ତଦ୍ୱୟରେ ତ୍ରିପତାକ ଧାରଣ କରି ମୃଗଭଳି ସମ୍ମୁଖକୁ ଓ ପାର୍ଶ୍ୱକୁ ବେଗରେ ଗତିକଲେ ତାହା ମୃଗୀଗତି ହୁଏ ।

## ଗଜଲୀଳାଗତିଃ

ପାର୍ଶ୍ୱୟୋସ୍ତୁ ପତାକାଭ୍ୟାଂ କରାଭ୍ୟାଂ ବିଚରଂସ୍ତତଃ ॥୩୧୪॥
ସମପାଦ ଗତିର୍ମନ୍ଦଂ ଗଜଲୀଲେତି ବିଶ୍ରୁତା ।

ଉଭୟ ହସ୍ତରେ ପତାକାହସ୍ତ ବିଚରଣ କରି ସମପାଦ ଭଙ୍ଗୀରେ ଧୀରେ ଧୀରେ ଗତିକଲେ ତାହା ଗଜଲୀଳା ଗତି ନାମରେ ପରିଚିତ ।

## ତୁରଙ୍ଗିଣୀଗତ୍ତଃ

ଉତ୍କ୍ଷିପ୍ୟ ଦକ୍ଷିଣଂ ପାଦମୁଲ୍ଲଂଘ୍ୟ ଚମୁହୁର୍ମୁହୁଃ ।।୩୧୫।।
ବାମେଣ ଶିଖରଂ ଧୃତ୍ୱା ଦକ୍ଷିଣେନ ପତାକ୍କକାମ୍ ।
ତୁରଙ୍ଗିଣୀ ଗତ୍ତଃ ପ୍ରୋକ୍ତା ନୃତ୍ତଶାସ୍ତ୍ରବଶାରଦୈଃ ।।୩୧୬।।

ଦକ୍ଷିଣ ପାଦକୁ ଉପରକୁ ଟେକି ବାରମ୍ବାର ଲମ୍ଫ ପ୍ରଦାନ କରି ବାମହସ୍ତରେ ଶିଖର ଓ ଦକ୍ଷିଣ ହସ୍ତରେ ପତାକା ଧାରଣ କଲେ ତାକୁ ନୃତ୍ୟବଶାରଦଗଣ ତୁରଙ୍ଗିଣୀ ଗତ୍ତ କହନ୍ତି ।

## ସିଂହୀଗତ୍ତଃ

ପାଦାଗ୍ରାଭ୍ୟାଂ ଭୁବ ସ୍ଥିତ୍ୱା ପୁର ଉତ୍ପ୍ଲୁତ୍ୟ ବେଗତଃ ।
କରାଭ୍ୟା ଶିଖରଂ ଧୃତ୍ୱା ଯାନଂ ସିଂହଗତ୍ତର୍ଭବେତ୍ ।।୩୧୭।।

ଉଭୟହସ୍ତରେ ଶିଖର ହସ୍ତ ଧାରଣ କରି ପାଦର ପଞ୍ଝା ଉପରେ ଦଣ୍ଡାୟମାନ ହୋଇ ସମ୍ମୁଖକୁ ଶୀଘ୍ର ଲମ୍ଫ ପ୍ରଦାନ କଲେ ତାହା ସିଂହୀଗତ୍ତ ହୁଏ ।

## ଭୁଜଙ୍ଗୀଗତ୍ତଃ

ତ୍ରିପତାକକରୌ ଧୃତ୍ୱା ପାର୍ଶ୍ୱୟୋରୁଭୟୋରପି ।
ପୂର୍ବବଦ୍ ଗମନଂ ଯୁକ୍ତ ସା ଭୁଜଙ୍ଗୀ ଗତ୍ତର୍ଭବେତ୍ ।।୩୧୮।।

ତ୍ରିପତାକ କର ଧାରଣ କରି ଦୁଇପାର୍ଶ୍ୱରେ ପୂର୍ବପରି (ସିଂହୀଗତ୍ତ) ଗତ୍ତ କଲେ ତାହା ଭୁଜଙ୍ଗୀ ଗତ୍ତ ହୁଏ ।

## ମଣ୍ଡୁକୀଗତ୍ତଃ

କରାଭ୍ୟାଂ ଶିଖରଂ ଧୃତ୍ୱା କଞ୍ଚିତ୍ ସିଂହୀସମାଗତ୍ତଃ ।
ମଣ୍ଡୁକୀ ଗତ୍ତରତ୍ୟେଷା ପ୍ରସିଦ୍ଧା ଭରତାଗମେ ।।୩୧୯।।

ଉଭୟ କରରେ ଶିଖରହସ୍ତ ଧାରଣ କରି କଞ୍ଚିତ ସିଂହ ପରି ଗତ୍ତକଲେ ତାହାଁ ମଣ୍ଡୁକୀଗତ୍ତ ବୋଲି ଭରତାଦିଙ୍କ ମଧ୍ୟରେ ପ୍ରସିଦ୍ଧ ।

## ବୀରଗତ୍ତଃ

ବାମେ ତୁ ଶିଖରଂ ଧୃତ୍ୱା ଦକ୍ଷିଣେନ ପତାକକା ।
ଦୂରାଦାଗମନଂ ଯୁକ୍ତ ବୀରଗତ୍ତରୁଦୀରିତା ।।୩୨୦।।

ବାମହସ୍ତରେ ଶିଖର ଓ ଦକ୍ଷିଣରେ ପତାକା ଧାରଣ କରି ଦୂରରୁ ଆସିଲେ ତାହା ଖଟ୍‌ଗତ ହୁଏ ।

## ମାନବୀଗତଃ

ମଣ୍ଡଳାକାରବଦ୍ ଭ୍ରାନ୍ତ୍ୟା ସମାଗତ୍ୟ ମୁହୁର୍ମୁହୁଃ ।
ବାମଂ କରଂ ନ୍ୟସ୍ୟ କଟୌ ଦକ୍ଷିଣେ କଟକା ମୁଖମ୍ ॥୩୨୧॥
ମାନବୀଗତିରତ୍ୟେଷା ପ୍ରସିଦ୍ଧା ପୂର୍ବସୂରିଭିଃ ।

ମଣ୍ଡଳାକାରରେ ଭ୍ରମଣ କରି ବାରମ୍ବାର ସମାଗତ ହୋଇ ବାମକର କଟୀରେ ଓ ଦକ୍ଷିଣରେ କଟକାମୁଖ ଧାରଣ କଲେ ତାହା ପୂର୍ବସୂରୀଗଣଙ୍କ ମଧ୍ୟରେ ମାନବୀଗତି ବୋଲି ପ୍ରସିଦ୍ଧ ।

## ଉପସଂହାର

ମଣ୍ଡଳାନି ପ୍ରଯୁକ୍ତାନି ତଥୈବୋତ୍ପ୍ଲବନାନି ଚ ॥୩୨୨॥
ଭ୍ରମର୍ଯ୍ୟଶ୍ଚୈବ ଚାର୍ଯ୍ୟଶ୍ଚ ଗତୟଶ୍ଚ ପରସ୍ପରମ୍ ।
ଏକେ କଭେଦସମ୍ବନ୍ଧାଦନନ୍ତାନି ଭବନ୍ତିହି ॥୩୨୩॥
ଏତାଶ୍ଚ ନର୍ତ୍ତନବଧୌ ଶାସ୍ତ୍ରତଃ ସମ୍ପ୍ରଦାୟତଃ ।
ସତାମନୁଗ୍ରହେଣୈବ ଜ୍ଞେୟା ନାନ୍ୟଥା ଭୁବି ॥୩୨୪॥
॥ଇତି ଶ୍ରୀ ଭଗବାନ୍ ନନ୍ଦିକେଶ୍ୱରକୃତମ୍ ଅଭିନୟଦର୍ପଣଂ ସମାପ୍ତମ୍ ॥

ମଣ୍ଡଳ, ଉତ୍ପ୍ଳବନ, ଭ୍ରମରୀ, ଚାରୀ ଓ ଗତି ପରସ୍ପରର ସମ୍ବନ୍ଧାନୁଯାୟୀ ଅଶେଷ ପ୍ରକାର ଭେଦ ହୁଏ । ଏହି ନର୍ତ୍ତନବିଧି ଗୁଡ଼ିକୁ ଶାସ୍ତ୍ରରୁ, ଗୁରୁପରମ୍ପରାରୁ ଏବଂ ସଜ୍ଜନଙ୍କଠାରୁ ଜାଣିବା ଉଚିତ, ଅନ୍ୟଥା ନୁହେଁ ।

# ପରିଶିଷ୍ଟ

## ଅଥ ଅଷ୍ଟରସାଃ

ଶୃଙ୍ଗାରବୀରକରୁଣାଦ୍ଭୁତହାସ୍ୟଭୟାନକାଃ ।
ବୀଭତ୍ସରୌଦ୍ରୌ ଚ ରସା ଶୃଙ୍ଗାରଃ ଶୁଚିରୁଜ୍ଜ୍ୱଳଃ ॥

ଶୃଙ୍ଗାର, ବୀର, କରୁଣ, ଅଦ୍ଭୁତ, ହାସ୍ୟ, ଭୟାନକ, ବୀଭତ୍ସ ଓ ରୌଦ୍ର— ଏହି ରସ । ଶୃଙ୍ଗାର ପବିତ୍ର ଓ ଉଜ୍ଜ୍ୱଳ ଅଟେ ।

## ଅବସ୍ଥାଭେଦାଃ

ଦୃଙ୍ମନଃସଙ୍ଗସଙ୍କଳ୍ପୋ ଜାଗରସ୍ତଥା ।
ତନୁତା ଋପି ବିଷୟନିବୃତ୍ତିସ୍ତ୍ରାପା ତଥା ॥
ମୋହୋ ମୂର୍ଚ୍ଛା ଚ ମରଣମିତ୍ୟବସ୍ଥାଃ ପ୍ରପଞ୍ଚିତାଃ ।
ଚକ୍ଷୁଃ ପ୍ରୀତିଶ୍ଚ ଚିନ୍ତା ଚ ସଙ୍କଳ୍ପୋ ଗୁଣକୀର୍ତ୍ତନମ୍ ॥
ନିଦ୍ରାଦ୍ୱେଷଶ୍ଚ ତାପଶ୍ଚ ଲଜ୍ଜାତ୍ୟାଗସ୍ତତଃ ପରମ୍ ।
ଉନ୍ମାଦମୂର୍ଚ୍ଛାମୃତୟ ଇତ୍ୟବସ୍ଥା ସ୍ମୃତା ପରୈଃ ॥
ନୟନୈର୍ଜନୟେଦ୍ ଭାବଂ ଭାବାତ୍ ସ୍ପର୍ଶଂ ସମାଚରେତ୍ ।
ସ୍ପର୍ଶେନ ଦ୍ରବମୁତ୍ପାଦ୍ୟ ରତିଂ ପଶ୍ଚାତ୍ତୁ ସମାଚରେତ୍ତୁ ॥

ଦୃଷ୍ଟି ଓ ଚକ୍ଷୁ ପ୍ରୀତି, ହୃଦୟ ଆସକ୍ତି, ସଙ୍କଳ୍ପ, ଜାଗରଣ, ତନୁତା (କୃଶତା), ବିଷୟ ନିବୃତ୍ତି, ଅତ୍ରପା (ଲଜ୍ଜାର ଅଭାବ); ମୋହ, ମୂର୍ଚ୍ଛା ଓ ମରଣ— ଏଗୁଡ଼ିକୁ ଅବସ୍ଥା କୁହାଯାଇଅଛି । ଚକ୍ଷୁପ୍ରୀତି, ଚିନ୍ତା, ସଙ୍କଳ୍ପ, ଗୁଣକୀର୍ତ୍ତନ, ନିଦ୍ରାଦ୍ୱେଷ, ତାପ, ଲଜ୍ଜାତ୍ୟାଗ, ଉନ୍ମାଦ, ମୂର୍ଚ୍ଛା ମୃତ୍ୟୁ— ଅନ୍ୟମାନେ ଏହି ଅବସ୍ଥାଗୁଡ଼ିକ ଉଲ୍ଲେଖ କରିଛନ୍ତି । ଚକ୍ଷୁଦ୍ୱାରା (ଦୃଷ୍ଟି) ଭାବକୁ ଉତ୍ପନ୍ନ କରିବ; ଭାବ ଉତ୍ପାଦନ ପରେ ସ୍ପର୍ଶ କରିବ ଓ ସ୍ପର୍ଶଦ୍ୱାରା ଦ୍ରବ (ରତିର ବିଗଳତା ବା ଚଞ୍ଚଳତା) ଉତ୍ପନ୍ନ କରାଇ ରତି ଆଚରଣ କରିବା ଆବଶ୍ୟକ ।

### ଚିନ୍ତା

କିଂ କରିଷ୍ୟତି କିଂ ଧ୍ୟାୟେତ୍ କ୍ୱାସ୍ତେ କିଂ ବକ୍ତି ଭାମିନୀ ।
ଇତ୍ୟେବ ମାନସୋତ୍କଣ୍ଠା ସା ଚିନ୍ତା ପରିକୀର୍ତ୍ତିତା ॥

"ପ୍ରିୟା କଣ କରିବ, କଣ ଧ୍ୟାନ କରୁଛି, କେଉଁଠି ଅଛି, କଣ କହୁଛି"—ଏହିପରି ମାନସିକ ଉତ୍କଣ୍ଠା ଚିନ୍ତା ବୋଲି ପରିକୀର୍ତ୍ତିତ ।

### ସଂକଳ୍ପଃ

ଯାମି ତାମରବିନ୍ଦାକ୍ଷୀଂ ପିବାମ୍ୟଧରପଲ୍ଲବମ୍ ।
ରମାମି ନିତରାଂ ସାର୍ଦ୍ଧଂ ତୟୈତ୍ତ ସୁଦୃଢ଼ଂ ପୁନଃ ॥
ତା ବିନା ନହି ଜୀବାମି ସୈବ ମେ ପରମଂ ଧନମ୍ ॥
ଇତଃ ପରଂ ସା ଶରଣମିତି ସଂକଳ୍ପ ଇରିତଃ ॥

ସେହି ପଦ୍ମନେତ୍ରୀ ପାଖକୁ ଯିବ ଅଧରପଲ୍ଲବକୁ ପାନ କରିବ, ତା ସହିତ ରମଣ କରିବ, ସେହି ମୋତେ ବାନ୍ଧି ରଖିଅଛି । ତା ବିନା ମୁଁ ଜୀଇ ପାରିବ ନାହିଁ, ସେହି ମୋର ପରମ ଧନ, ଆଜିଠାରୁ ସେ ମୋର ରକ୍ଷାକାରିଣୀ—ଏହାକୁ ସଂକଳ୍ପ ବୋଲି କୁହାଯାଏ ।

## ଗୁଣକୀର୍ତ୍ତନମ୍

ଏଷା ମୌଳିବିଭୂଷଣଂ ମୃଗଦୃଶାମେଷା ପରଂ ଜୀବନମ୍
ତାଂ ତ୍ୟକ୍ତ୍ୱାନହି କଶ୍ଚିଦସ୍ତି ଶରଣଂ ଯୂନାଂ ରସୋଲ୍ଲାସିନାଂ
ସା ଭୂଷା ଭୁବନସ୍ୟ କିଂ ପୁନରିୟଂ ବାଚ୍ୟଂ ପରଂ ଜୀବନ—
ମିତ୍ୟେବଂ କ୍ରିୟତେ ଯା ଗୁଣନୁତିଃ ସ୍ତ୍ରୀ ପୁଂପ୍ରଭେଦେଽପି ସା ।।

ଏ ହେଉଛି ମୃଗନୟନାମାନଙ୍କର ମସ୍ତକର ଭୂଷଣ, ପରମ-ଜୀବନ, ତାକୁ ତ୍ୟାଗକରି ଆଉ କିଛି ରସୋଲ୍ଲାସିମା ଯୁବକମାନଙ୍କର ନାହିଁ ସେ ହେଉଛି ସଂସାରର ଭୂଷଣ. ଅଧିକ କଣ କହିବ ? ଏ ପରମଜୀବନ ରୂପିଣୀ ଏହିପରି ଯାହାର ଗୁଣସ୍ତୁତି ଶୁଣାଯାଏ, ସ୍ତ୍ରୀ ହେଉ ବା ପୁରୁଷ ହେଉ ତାକୁ ଗୁଣକୀର୍ତ୍ତନ ବୋଲାଯାଏ ।

## କ୍ରିୟାଦ୍ୱେଷଃ

ଗଚ୍ଛ ଗଚ୍ଛସି ଚେତ୍ତାଂ ତାଂ ନାହଂ କାନ୍ତା ନ ମେ ପତିଃ ।
ଇତ୍ଥଂ ଚେତ୍ତ କଥନଂ ଯତ୍ର କଥଂ ଦ୍ୱେଷ ଉଚ୍ୟତେ ।।

"ତା ପାଖକୁ ଯଦି ଯାଇଛ ଯାଅ, ମୁଁ ତୁମ୍ଭର ପତ୍ନୀ ନୁହେଁ କି ତୁମ୍ଭେ ମୋର ପତି ନୁହଁ" ଏବଂ ତୁ ଶବ୍ଦର ଯେଉଁଠି କଥନ ହୁଏ ତାହାକୁ କ୍ରିୟାଦ୍ୱେଷ କୁହାଯାଏ ।

## ତାପଃ

କିଂ କରୋତି ସୁମାସ୍ତ୍ରୋ ମାଂ ପଞ୍ଚଭିର୍ବାଣସଞ୍ଚୟୈଃ ।
ତପତ୍ୟନନ୍ତର ଗାତ୍ରଂ ତାପୋଽସୌ ପରିକୀର୍ତ୍ତିତଃ ।।

"କନ୍ଦର୍ପ ମୋତେ ପାଞ୍ଚବାଣ ସଞ୍ଚୟ କରି କଣ କରୁଛି, ଅବିରତ ଶରୀର ତପ୍ତ ହେଉଅଛି"—ଏହାକୁ ତାପ କୁହାଯାଏ ।

## ଲଜ୍ଜାତ୍ୟାଗଃ

ଦୋର୍ଭ୍ୟାଂ ସମାଶ୍ଳିଷ୍ୟ ପୟୋଧରୌ ତୌ
ପ୍ରଚୁମ୍ବ୍ୟ ବିମ୍ବାଧରମାୟତାକ୍ଷ୍ୟାଃ ।
ସୁଖେନ ସୁପ୍ତଃ ଶୟନେ ନିଶାୟାଂ —
ମୁଦ୍‌ବୋଧିତୋଽହଂ ଚରଣାୟୁଧେନ ।।

"ସେହି କୁଚ ଯୁଗଳକୁ ହସ୍ତଦ୍ୱାରା ଆଲିଙ୍ଗନ କରି ଏବଂ ବିଶାଳନେତ୍ରୀର ବିମ୍ବାଧରକୁ ଚୁମ୍ବନ କରି ରାତିରେ ମୁଁ ସୁଖରେ ଶୋଇଥିଲି (କିନ୍ତୁ) ଏ କୁକୁଡ଼ାଟା ମୋତେ ଉଠାଇ ଦେଲା ।" ଏହାକୁ ଲଜ୍ଜାତ୍ୟାଗ କହନ୍ତି ।

## ଉନ୍ମାଦଃ

ପଟେ ଲିଖିତମାଲୋକ୍ୟ ନାୟକ କାଞ୍ଚନାଙ୍ଗନା
ପରିରଭ୍ୟ ଦୃଢ଼ଂ ଦୋର୍ଭ୍ୟାଂ ଚୁଚୁମ୍ବେ ଗଣ୍ଡୟୋରମୁମ୍ ।।

କୌଣସି ନାୟିକା ନାୟକକୁ ପଟରେ ଲେଖା ହୋଇଥିବା ଦେଖି ଉଭୟ ହସ୍ତଦ୍ୱାରା ଦୃଢ଼ ଆଲିଙ୍ଗନ କରି ଉଭୟ ଗଣ୍ଡରେ ଚୁମ୍ବନ ଦେଲା । (ଏହାକୁ ଉନ୍ମାଦ କହନ୍ତି) ।

## ମୂର୍ଚ୍ଛା

ଯତ୍ରାଙ୍ଗନାୟା ବୈକଲ୍ୟଂ ପଞ୍ଚପ୍ରାଣ ନିରୋଧନମ୍ ।
ଅସହ୍ୟା ଯାମମାତ୍ରଂ ସାମୂର୍ଚ୍ଛା ବାନ୍ୟା ମୃତିର୍ନହି ।।

ଯେଉଁଠି ପଞ୍ଚପ୍ରାଣ ନିରୋଧନ ପୂର୍ବକ ନାୟିକାର ବିକଳତା ଏକ ପ୍ରହରକୁ ମଧ୍ୟ ସହ୍ୟକରି ପାରେ ନାହିଁ ତାହା ବାଞ୍ଛିତ ଅନ୍ୟ ମରଣ କିନ୍ତୁ ନୁହେଁ (ଅର୍ଥାତ୍ ମୂର୍ଚ୍ଛାକୁ ହିଁ ମରଣ କହନ୍ତି) ।

ଅଭିନୟ ଦର୍ପଣମ୍ ସମାପ୍ତମ୍ ।



ଶୈଳ ପ୍ରିଣ୍ଟିଂସ୍, କଟକ-୧